# ସେକାଳ ପଖାଳ

ମହାପାତ୍ର ନୀଳମଣି ସାହୁ




Digitized by srujanika@gmail.com

ସେକାଳ ପଖାଳ : ଲେଖକ : ମହାପାତ୍ର ନୀଳମଣି ସାହୁ : ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨ : ପ୍ରଚ୍ଛଦ : ଅସିମବସୁ , ପ୍ରଥମ ପ୍ରକାଶ : ୧୯୭୮, ୨ୟ ପ୍ରକାଶ : ୧୯୮୧, ୩ୟ ପ୍ରକାଶ—୨୨-୧୨-୧୯୮୮, ମୁଦ୍ରକ : ସତ୍ୟସୁନ୍ଦର ପ୍ରେସ, ମଙ୍ଗଳାସାହି :

**SEKALA PAKHALA** : *Written by*—**Mahapatra Nilamani Sahu,** *Published by* : **Sahadev Pradhan,** Friends' Publishers, Binodbehari, Cuttack 2, *Cover design by* : **Asim Basu** : Ist Edition—1978 : Second Edition—1981 : Third Edition 22-12-1988, *Printed by* : **Satyasundar Press,** Mangala Sahi, Price—**Rs 18.**

Digitized by srujanika@gmail.com

ଶ୍ରୀ ବହାରୀଲାଲ ପଟ୍ଟନାୟକ

ଶ୍ରୀ ହୃଦାନନ୍ଦ ସାହୁ

ଶ୍ରୀ ରାଧାକୃଷ୍ଣ ରଂଜ

ଶ୍ରୀ ଜୀବନାନନ୍ଦ ପାଣି

ଶ୍ରୀ ଚନ୍ଦ୍ରଶେଖର ରଥ

ଆପଣମାନଙ୍କ ଶ୍ରୀନାମରେ ଏହି ଲଘୁ କୃତିଟିକୁ ଉତ୍ସର୍ଗକରି ଆପଣାକୁ ଧନ୍ୟ ମନେ କରୁଛି ।

ମହାପାତ୍ର ନୀଳମଣି ସାହୁ

ଭୁବନେଶ୍ୱର

୧୯୬୮

Digitized by srujanika@gmail.com

# ବକ୍ତବ୍ୟ କିଂଚିତ୍……….

"ସେକାଳ ପଖାଳ" ପ୍ରକୃତରେ ସେକାଳର ହିଁ ପଖାଳ ।

ଏକ ପ୍ରକାର ଲଘୁ-ରସ-ବିଳସିତ ମନନଶୀଳତା ମଧ୍ୟରୁ ଏହି ଲେଖାଗୁଡ଼ିକ ଉଦ୍‌ଭୂତ । ଅଷ୍ଟପ୍ରହରବ୍ୟାପୀ ଗମ୍ଭୀରଭାବୁକତା ବା ଗୁରୁ ଚିନ୍ତନଶୀଳତା ଅନେକ ସମୟରେ ପ୍ରାଜ୍ଞ ଓ ଭାବୁକବ୍ୟକ୍ତିର ଏକ ଅଭ୍ୟାସଦୋଷରେ ପର୍ଯ୍ୟବସିତ ହୋଇପଡ଼େ । ଏହି ଅସ୍ୱାଭାବିକ ଓ ଅନାବଶ୍ୟକ ଭାବାକୁଳତା ଓ ଚିନ୍ତାକୁଳତା ହେତୁ ମନ ତାର ସଂପ୍ରସାରଣଶୀଳ କ୍ଷମତା ହରାଇବସେ । ବିଚାରବନ୍ତ ପ୍ରାଣୀ ପକ୍ଷରେ ଏହା ଏକ ବିଡ଼ମ୍ବନା ଓ ଉତ୍ପୀଡ଼ନର ବିଷୟ ।

ବୁଦ୍ଧି-ବିକଶିତ ମଣିଷମନର ଏକ ବିଶିଷ୍ଟ ଗୁଣ ହେଉଛି—ତାର ଗ୍ରହଣ ବା ପ୍ରକ୍ଷେପଣର ସ୍ୱାଧୀନତା । ସେ ତାର ସମସ୍ତ ଲଘୁ ବିଷୟକୁ ଗୁରୁତର ସମସ୍ୟାରେ ପରିଣତ କରିପାରେ ଓ ସମସ୍ତ ଗୁରୁତର ବ୍ୟାପାରକୁ ଲଘୁ କରିଦେଇ ଉଡ଼ାଇ ଦେଇପାରେ । ଏହି ସ୍ୱେଚ୍ଛାକୃତ ସ୍ୱାତନ୍ତ୍ର୍ୟାଧୀନ କ୍ଷମତାଟି ବିଚାରଶକ୍ତିହୀନ ପ୍ରବୃତ୍ତି-ତାଡ଼ିତ ପଶୁର ଯେମିତି ନାହିଁ, ସେମିତି ନାହିଁ ଚିନ୍ତାକୁଳ ଓ ଭାବାକୁଳ ବ୍ୟକ୍ତିମାନଙ୍କର । ପଶୁ ଖୁସିହୁଏ—ମାତ୍ର ହସିପାରେ ନାହିଁ । ମାତ୍ର ବୁଦ୍ଧି ର ମଣିଷ ଖୁସି ନହୋଇ ଥିଲେ ବି ହସିପାରେ ।

ମନଭିତରେ ସୁପ୍ତିଛ ଓ ସୁପ୍ରାକବୃତ୍ତ ରହସ୍ୟ ଗମ୍ଭୀର ଚଟୁଳତାକୁ ନାନା-ପ୍ରକାର ହାଲୁକା ବୌଦ୍ଧିକତାର ଖିଆଲ ଖୁସିରେ ତରଳିତ କରାଯାଇ ପରିବେଷଣ କରାଯାଇପାରେ । ମନ ଓ ମନନଶୀଳତାର, ହୃଦୟ ଓ ସମ୍ବେଦନଶୀଳତାର ଏହି ଗୁରୁ ଓଜନକୁ ହୁଗାଳଦେଇ, ଖୋଲା ଖୋଲି କିଂଚିତ୍ ଖିଆଲୀ ପ୍ରଗଲ୍‌ଭ ଭଙ୍ଗୀରେ କଥା କହିବାର ସ୍ୱାଧୀନତା ଓ କ୍ଷମତା ପ୍ରତି ସୁଲେଖକର ନିଷ୍ଠା ଅଛି ।

Digitized by srujanika@gmail.com

ଏହି ପୁସ୍ତକସ୍ଥ କେତୋଟି ଗଳ୍ପ ଓ ରମ୍ୟରଚନା, ଏହି ପ୍ରକାର ରଙ୍ଗ, ଢଙ୍ଗ ଓ ରସିକତାରେ ଅନୁପ୍ରାଣିତ ହୋଇ ଲେଖାଯାଇଛି । ୧୯୫୦ ଠାରୁ ବିଭିନ୍ନ ସମୟରେ ଏଗୁଡ଼ିକ ଲିଖିତ ହୋଇ ପତ୍ରପତ୍ରିକା ମାନଙ୍କରେ ପ୍ରକାଶ ପାଇଥିଲି । ଫ୍ରେଣ୍ଡସ୍ ପବ୍ଲିଶର୍ସର ଅଧ୍ୟକ୍ଷ ଶ୍ରୀ ସହଦେବ ପ୍ରଧାନ ଏଗୁଡ଼ିକୁ ପ୍ରକାଶ କରିବାକୁ ଯାଉଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ମୋର ପ୍ରିୟ ପାଠକ ପାଠିକା ଏଗୁଡ଼ିକୁ ଉପଭୋଗ କଲେ ମୁଁ କୃତାର୍ଥ ହେବି । ଇତି ।

ଶ୍ରୀଗୁଣ୍ଡିଚା — ମହାପାତ୍ର ନୀଳମଣି ସାହୁ

ତା ୭ । ୭ । ୧୯୭୮ — ଭୁବନେଶ୍ୱର

Digitized by srujanika@gmail.com

## —ଏଥିରେ ଅଛି—



Digitized by srujanika@gmail.com

# ସେକାଳ ପଖାଳ

"ଛାଡନ୍ତୁ ଆଜ୍ଞା, ଆଉ କହିଲେ ଲାଭ କଣ ? ସେ କାଳ ଆଉ ନାହିଁକି, ସେ ପଖାଳ ବି ଆଉ ନାହିଁ । ସେ ଯେଉଁ ପଖାଳ ଆମେ ପିଲାଦିନେ ଖାଉଥିଲୁ—ମାଟିହାଣ୍ଡିରେ ବୋଉ ପୁରୁଣା ଚାଉଳରେ ଭାତ ରାତିରୁ ପଖାଳ ଦେଇଥିବ—ଏଡ଼େ ଏଡ଼ୁଠାମାନ ଭାତ-ବରକୋଳି ଭଜଆ—ପରଶୁଣା ମାଡ଼ଦେଇଥିବ—ସକାଳୁ ଉଠି ଦାନ୍ତ ଘଷିସାରି ତନ୍ତୁଳିଟିକେ କଞ୍ଚାଲଙ୍କାରେ ଚକଟି ଦେଇ, ସେ ଯେଉଁ ବାଳକାଠୀର ହାଉଁ ବଡ଼ା କଂସା । ଆଜି ସେ କଂସା ବି ଆଉ କାହିଁ ? ସେଇ କଂସା ନୁହେଁ—କୁଣ୍ଡ । ଏବକାଳକା ପିଲାଏ ସେ କଂସା ଭିତରେ କୁମ୍ଭ ମୁନଙ୍କପରି ବୁଡ଼ି ମରିବେ । ଏତ ଆଉ ସେ କାଳର ପିଲା ନୁହଁନ୍ତି !! ଆମେ ଯେତେ-ବେଳେ ପିଲା ହୋଇଥିଲୁ—କେତେ କେତେ ବ.ହୁଁଠାମାନ—କେତେ ଚଉଡ଼ା ହାତ ପାପୁଲି, କେମିତି ହେଲା ? ସକାଳୁ ସେରେ କଂସ୍ଥ ଗାଈକ୍ଷୀର ଫେଣଲଗାକରି ପିଇଦେଉଥିଲୁ । ଆମ ବାଉରିଆଣ୍ଡା ତ ସକାଳୁ ଉଠି ଗାଈ ପହ୍ନାରେ ମୁହଁ ଲଗାଇ ଦୁଧ ପିଇବ । ସେ ଦୁଗ୍ଧ ବି ଆଉ କାହିଁ ? ସେ ଗାଈ ବି କାହାନ୍ତି ? ଆଜି କାଲିର ଯେ ଗାଈ—ସେତେବେଳେ ସେ ଛେଳି । ସେ କାଳର ଛେଳି ଆଜି ଗାଈ ବୋଲାଉଛନ୍ତି । ସେ ଦୁଗ୍ଧ ବର୍ଣ୍ଣି କେମିତି ! ସେ କେତେ ମିଷ୍ଟୁକ । ଆହା—ହା— ସେ ମିଷ୍ଟୁକ ଆଉ ଆଜକାଲି କାହିଁ ? ଏ ଜିଭ ଆଉ ସେ ମିଠା କ'ଣ ଚାଖିଲା ନାହିଁ ! ଏବେ ତ ଆଖୁ ହୋରୁଅ ଆଉ ମିଷ୍ଟୁକ ଲାଗୁନ—ଦୁଗ୍ଧ କଥା କଣ କହିବା ? କେମିତି ମିଠା ଲାଗିବ ? ବସୁଧାରେ କ'ଣ ଆଉ ସେ ମିଠାରସ ଅଛି ଯେ ଆଖୁଗଛ ଶୋଷିବ ? ଖାଲି କଣ ଆଖୁ ? କାହିଁକି ବାଇଗଣ, ସାରୁ, ଆଳୁ,

Digitized by srujanika@gmail.com

କଦଳୀ, କନ୍ଦମୂଳ କଥା ଏବେ ଦେଖନ୍ତୁ ! ସେ ମିଠା ଆଉ ଅଛି ପରିବାରେ ? ଆହା— ହା —କୁଆଡେ ଗଲା ସେ ଦିନ ? ଆଖୁ ବାଡରେ ଭାଲୁ ପଶୁଥିଲେ ଯେ—( ହାୟରେ ! ସେ ଭାଲୁ ମଧ୍ୟ ଆଉ କାହାନ୍ତି ? ) ରାତିରେ ଭାଡ଼କରି ଭାଲୁ ଜଗୁଥାଉଁ । ନିଆଁ ଅଗ୍ରା ଜାଳି—ଭାଡ଼ଉପରେ ପଲାରେ ବସି- ଟିଣ ବାଡେ଼ଇ କଳକଳା ଉଡ଼ଗୁଡ଼୍ । ନିଆଁ ଦେଖି ଉଡ଼ ଶୁଣି ଭାଲୁ ପଳାନ୍ତି । ଥରେ ରାତିରେ ଆମ ସାହିର ଘନାମଳିକ (ଆହା ! ଘନା ମଳିକ ବି ଆଉ ନାହିଁ । ) ଆଉ ମୁଁ ଏକାଠି ପଲରେ ବସି ଭାଲୁ ଜଗିଥାଉଁ । ଜହ୍ନ ପଡ଼ିଥାଏ ରଣିଫୁଲପରି—ଗୋଟାଏ ଠେକୁଆକୁ ଦେଖି ଘନା ମଳିକ ସାଗୁଆଡି ଲୋଭରେ ଭାଡ଼ତଳକୁ ଡେଇଁପଡ଼ିଲା । ଠେକୁଆ ମାଉଁସ ଭାରି ନରମ ହାତରେ ଧରିଥାଏ ଗୋଟେ ଚାଳବାଡ଼—ଦଉଡ଼ିଲା ଠେକୁଆ ପଛରେ । ଠେକୁଆ ଦଉଡ଼ୁଛି—ତା ପଛରେ ଧପାଉଛି ଘନା ମଳିକ । ସଞ୍ଜବେଳେ ମୁଉଜାଏ ଅଫିମ ଗିଳିଛି । ( ହାୟ ! ଆଉ ସେ ଅଫିମ କାହିଁ ? ) ପଲରେ ଚିଲମେ ଗଞ୍ଜେଇ ଟାଣିଛି । ସେଇ ନିଶାରେ ଠେକୁଆ ପଛରେ ଧପାଉଛି ; ମୁଁ ମାଚଳ ପଲରେ ଏକୁଟିଆଟି ବସିଥାଏଁ । ଘଡ଼ିଏ ଗଲା ଦି ଘଡ଼ି ଗଲା—ରାତି ଆସି ତିନିପହର ହେଲା—କୁଆଡେ ଗଲା ଠେକୁଆ ? କୁଆଡେ ଗଲା ଘନା ମଳିକ ? ଏଣେ ପଲ ଭିତରେ ମଶା ଯେ କାମୁଡୁଥାନ୍ତି କହିବା କଥା ନାହିଁ । ନିଦ ବା ହେଉଛି କେଉଁଠି ! ସେ ମଶା କଣ ଆଜିକାଲି ଆଉ ଅଛନ୍ତି ? ହେଇଟି--ସେକାଳ ମଶା ଯଦି ଆଜିଥାନ୍ତେ--ତମେ କୁହନ୍ତ ଡାମରା କୁଆ ! ମୁଁ ତ ରାତିଯାକ ଉଜାଗର ବସିଛି । ରାତି ପାହାନ୍ତା ସରିକି—ଜହ୍ନ ଆସି ବୁଡ଼ିବାକୁ ବସିଲାଣି—ମୁଁ ରୁହିଁ ଦେଖେତ ଆମ ଅଁଖୁକିଆରି ପାଖବନ୍ଧକୁ ଲଗି ପୋଖରି କୂଳେ କୂଳେ ଦୁଇଟା ଜନ୍ତୁ ସାଁ ସାଁ ହୋଇ ଧାଉଁଛନ୍ତି । କି ଜନ୍ତୁ ଜାଣିଛ ? ଗୋଟେ ଭାଲୁ ଲାଞ୍ଜକୁ ଧରି ଘନା ମଳିକ ଦଉଡ଼ୁଛି । ଭାଲୁ ଆଗେ ଆଗେ ଦଉଡ଼ୁଛି । ତା ପଛରେ ତା ଲାଞ୍ଜଧରି ଘନା ମଳିକ ବାଁ ହାତରେ ଲାଞ୍ଜ ଆଉ ଡାହାଣ ହାତରେ ଧରିଛି ସେଇ ଚାଳବାଡ଼ଟା । ଭାଲୁ ବାଁ ଆଡ଼କୁ ମୁହଁ ବଢ଼ାଇଲେ ପାହାରେ—ଡାହାଣ ଆଡ଼କୁ ମୁହଁ ବଢ଼ାଇଲେ ପାହାରେ— ।

ଭାଲୁଟାର ନାକଦଣ୍ଡା ଫାଟି ରକ୍ତ ବାହାରିଲାଣି, ଦଉମରା ହୋଇ-ଗଲାଣି । ହାଏଁ ଉଁହୁ ଭାଲୁ ! ମୋ ଉପରେ ଯେମିତି ନଜର ପଡ଼ିଗଲା—

Digitized by srujanika@gmail.com

ଘନା ମଳିକ ଡାକପକାଇଲା— ମାଳାଜ୍ଞା ! ଝାଙ୍ଗିଆଟା ଧରି ଜଲଦି ବାହାରିଆସ । ମୁଁ ଆଉ କି ସମ୍ଭଳା ପଡ଼େ ? ଝାଙ୍ଗିଆଟା ଧରି ଦଉଡ଼ିଲି । ମୋ ଧିଅରେ ସେ ସେତେବେଳେ ହାତିର ବଳ । ଭାଲୁ ମଲା । ମୁଁ କହିଲି —ମଳିକ ପୁଅ ! ଭଲ୍ଲା ଠେଙ୍କୁଆ ପଛରେ ଗୋଡ଼ାଇଲୁ—ଭାଲୁ ଲାଞ୍ଜ ଧରେଇ ଦେଲି । ଘନା ମଳିକ ତା ପାଦ ତଳମାଟିରୁ କଣ୍ଟା କାଢ଼ୁ କାଢ଼ୁ କହିଲା——କାହିଁକି ସେ କଥା କହୁଚ ମାଳାଜ୍ଞା ! ମୋ ବାପ ସପନ ମଳିକ ମହାବଳ ବାଘ ମୁହଁକୁ ଧରି ହଫାଳକରି ଚିରି ଦେଇଥିଲା—ଆଉ ଆଜ ମୁଁ ତାଆର ପୁଅହୋଇ ଭାଲୁ ଲାଞ୍ଜଟାକୁ ଧରିପକାଇଲି ଯେ ବଡ଼କଥାଟେ ହୋଇଗଲା— ।

ହାପୁ ହାପୁ ! କୁଆଡ଼େ ଗଲା ସେ ଆଖୁକିଆରୀ—ସେ ଭାଲୁ ସେ ଘନା ମଳିକ ! ହଁ—ଆଖୁକିଆରୀ କଥାରୁ ଆଉ କଥା ଏ ମନେ ପଡ଼ିଲା । ଆଖୁକିଆରୀକୁ ପାଣି ବୋହିବା କାମ କେଡ଼େ କଠିଣ, ସେ କଥା କ'ଣ ଆଜ ତୁମେମାନେ ବୁଝିପାରିବ ? ଗୋଟାଏ ପୋଖରୀ ହୁଡ଼ାରେ ସିଆର କାଟି ସେଠାରେ ଦୁଇଜଣ ଭେଣ୍ଡା ପାଣି ବହିବେ । ସଂଜ ବୁଡ଼ୁ ଟେଣା ଧରିଲେ ରାତି ଡିନିରୁ ଦଣ୍ଡ ବେଳକୁ ଆଖୁକିଆରୀର ତଙ୍ଗା ଭାସିବ । ରାତିପାହାନ୍ତାରୁ ଟେଣା ଧରିଲେ—ଦିନ ଦୁଇ ଦଣ୍ଡକୁ ଆଖୁକିଆରୀ ଦିଶୁଥିବ ଚଳକାମସ୍ତ । ମୋ ପିଲାଦିନର କଥା । ମୋ ବାପା ମଦନ ମହାପାତ୍ରେ ସେତେବେଳେ ଜୁଆନ ଭେଣ୍ଡା । ତାଳଗଛ ପରି ଡେଙ୍ଗା—ଶାଳଗଛର ଗଣ୍ଡି ଭଳି ହାତଗୋଡ଼ । ମୋ କକେଇ ହାଡ଼ୁ ମହାପାତ୍ରେ ତାଙ୍କୁ ବଳି । ଦୁଇଭାଇ ଏକାଠି ଥା'ନ୍ତି । ଘରବ ଘର ବଖ୍ରା କୁଟୁମ୍ବି—ମାଣ୍ଡିଆ ଜାଉ —କାଣ୍ଡିଆ କୁଣ୍ଡାର ପୋଡ଼ପିଠା—ଦୁଇସେର ମାରୁଚା ଦୁଧ ( ସେକାଳେ ଘରେ ଘରେ ଗାଈ ) ସେକାଳ କଂସାରେ ସେକାଳ ପଖାଳରୁ କଂସାଏ । ଖାଇପିଇ ହାଷ୍ଟ ପେଟିକା ହେଇଥାନ୍ତି ଦୁଇଭାଇ । ଗୁଳରେ ମଧ୍ରୀ ଦୁଲୁକେ । ଦୁଇଭାଇ ଆଖୁକିଆରୀକୁ ପାଣି ବୁହନ୍ତି । ଦିନେ ରାତିରେ—ମୋ ବାପା କହିଲେ ମୋ କକେଇଙ୍କୁ—ହାଡ଼ୁଆରେ ! ରାତି ଦଣ୍ଡଏ ଥିବ ଉଠେଇ ଦେବୁ । ସକାଳ ନ ହେଉଣୁ ବୋରେଇ ପାଖ ଆଖୁକିଆରୀରେ ପାଣି ମଡ଼ାଇଦେବା । ହାଡ଼ୁଆ କକେ "ହଁ" ଭରି ଶୋଇଲେ । ସେମାନେ ତ

Digitized by srujanika@gmail.com

ଆଜି ଜାଣନ୍ତି ନାହିଁ ଯେ ବାଉଆଡେ଼ କୋଉଠି ଲୁଚି ରହି ତାଙ୍କ କଥା ଶୁଣି ସାରଲାଣି ଭୂତ । ବ ଭାଇ ଶୋଇଲେ । ରାତି ଘଡ଼ିଏ ଅଛି । ମୋ ବାପାଙ୍କ ଦୁଆର ମୁହଁରେ କବାଟ ବାଡ଼ାଉଛି ଭୂତ । ବାପା ବୁଝିଲେ ସାନ ଭାଇ ଦାଡ଼ଆ ଡାକୁଛି । ବାପା ନିଦ ମଳ ମଳ ହୋଇ କହିଲେ—କଏ ଦାଡ଼ଆ କଣେ ? ଭୂତ ତ କଥା କହେ ନାହିଁ । ଖାଲି କହିଲା—"ହୁଁ !!!" ମୋ ବାପା ସେଇ ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରରେ ଟୁଆଁ ପଡର ପିନ୍ଧ ଟାଏ ଲଗାଇ—ତା ପଛେପଛେ ଚାଲିଲେ । ଭୂତ ଆଗେ ଆଗେ ଚାଲିଛି । ବାପା ବାଟରେ ଯେତେକଥା ପଚାରୁଥାନ୍ତି--ଭୂତ ସବୁକଥାରେ କହୁଥାଏ 'ହୁଁ !!!' ଦୁହେଁ ଯାଇ ଆଖୁକିଆରି ପାଖେ ପହୁଞ୍ଚି ସେଣା ଧରିଲେ । ପାଣିବୁହା ଚାଲିଛି । ବାପାଙ୍କ ଦାନ୍ତ କଟକଟ ଡାକିଲାଣି—ଝାଡ଼ା ଲାଗିଲାଣି । ସେ କହିଲେ—ଦାଡ଼ଆ ! ସେତିକି ହୋଇ ଥାଉରେ—ମୋତେ ପୋଖରୀ ପାଣି ଥଲବଦେଲାଣି । ଭୂତ ଖାଲି କହୁଥାଏ 'ହୁଁ' !! ବାପା ଚାହିଁ ଦେଖନ୍ତି ତ —ପାଣି ଆଖୁକିଆରି ବୁଡାଇ ବିଲପାଳି ମାଡ଼ିଗଲାଣି—ଗମ୍ଭୀର ଦିଶିଲାଣି ଚଇତ୍ରାମସ୍ତେ । ବାପା ପୁଣି କହିଲେ—ଦାଡ଼ଆ ! ସେଣା ରଖରେ । ଆଉ ପାଣି ଦରକାର ନାହିଁ । ଭୂତ ଖାଲି କହୁଥାଏ—ହୁଁ । ଆଉ ସେଣା ଛାଡୁ ନଥାଏ । ବାପା ତିନଥରକୁ ବୁଝିଗଲେ—ଏ ଦାଡ଼ଆ ନୁହଁ—ଶଳା 'ଭୂତ' । ଯଦି ବର୍ତ୍ତମାନ ମୁଁ ସେଣା ଛାଡ଼ିଦେବି—ତା'ହେଲେ ଚକ୍ଷୁଶାତ ଏ ମୋତେ ଏଇଠି ମୋଡ଼ିବ—କଦାଚନ ଛାଡିବି ନାହିଁ । ଅଚ୍ଛା ହେଉ । ଦେଖି ତା ଦେଖି—ତୁ ବେହିପୋ କେଡେ ବାପର ପୁଅରେ ଭୂତ ବେଟା ! ବାପା ଆଉ ସେଣା ଛାଡ଼ିଲେ ନାହିଁ । ପଛବାଟେ ଝାଡ଼ା ବହି ଯାଉଛି । ବାପା ସେଣା ଧରିଥାନ୍ତି, ସକାଳ ହେଲା । ସୂର୍ଯ୍ୟ ମହାପୁରୁ ରଥରେ ବସି ଉଠିଲେ, ଭୂତ ଦେଖିଲା---ଆଉ ପାରିବ ନାହିଁ । ଥେଲା ଥେଲା—ସେଣା ଛାଡ଼ି କୁଆଡ଼େ ଯେ ଅଦୃଶ ହୋଇଗଲା ! ସେମାନେ ତ ହେଲେ ପବନ ପୋରୂପୀ । ବାପା ଝାଡ଼ଝୁଡ଼ ହୋଇ ଘରକୁ ଆସିଲେ । ମୋ ବୋଉ ଶୁଣିଲା ସବୁ କଥା । ଶୁଣିକରି ବାପାଙ୍କୁ ଚାଳିଦେଲା—ଆହେ ବୁଝିଲ ! ତମେ ଭୂତ ନ ହୋଇଥିଲେ ଭୂତ ସଙ୍ଗେ ପାଣି ବୋହିଥାନ୍ତ ? ତୁମେ ତୁମ ଭାଇ ଦାଡ଼ଆକୁ ଚିହ୍ନି ପାରି ନଥାନ୍ତ ? ତା କଣ୍ଠ ବାରିନଥାନ୍ତ ? ଆହା— ହା—ହା —କୁଆଡ଼େ ଗଲା ସେ ଦିନ ! ସେ ପାଣିବୁହା—ଆଖୁକିଆରି

Digitized by srujanika@gmail.com

—ଆଉ ସେ ଭୂତ !! ଏବକାଳର ପିଲାତ ତୁମେ ଭୂତ ବିଶ୍ୱାସ କରୁନ । ଭୂତ ତ ଦେଖିନା—ଆଉ ବିଶ୍ୱାସ କରିବ କୁଆଡ଼ୁ ? ତୁମେ ସବୁତ ଆଜିକାଲି —ସବୁ କଥାକୁ ଅବିଶ୍ୱାସ କଲ । ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର । ବିଶ୍ୱାସରେ ଖାଲି କୃଷ୍ଣ ଦିଶନ୍ତି ନାହିଁ—ଭୂତବି ଦେଖାଯାନ୍ତି ।

ଆରେ କି ପାଠ ତେମେ ସବୁ ପଢ଼ୁଚ ଆଜିକାଲି ? ଆଉ କଣି ପୃଥିବୀରେ ସେ ପାଠ ଅଛି ? ବିଦ୍ୟାବଳରେ ସେକାଳେ ଉଡ଼ିଗଲା ଚଢ଼େଇର ପର ଗଣି ଦେଉଥିଲେ । ମୋ ଅଜା କହୁଥିଲେ—ତାଙ୍କ ନାମ ମିଛୁ ଅବଧାନ । ଭାରି ଭାରି ବିଦ୍ୟା ସାଧି ଥିଲେ ସେ । ଚାଣିକ୍ୟ ଶ୍ଲୋକତ ତାଙ୍କ ଜିଭ ଆଗରେ ଥିଆ । ସେ କୁଆଡ଼େ ତାଙ୍କ କଣ୍ଠରେ ସୋରସୋଷଙ୍କୁ ବାନ୍ଧିଥିଲେ । ଓଡ଼ାଙ୍କ, ଫେଡ଼ାଙ୍କ, ଶୋଧି ପରିମାଣି ସବୁ ବିଦ୍ୟାରେ ଧୁରନ୍ଧର । ଥରେ ଜଣେ ସାଇବ ଆସିଥାଏ—ଗାଁକୁ କଣ କେଣ୍ ତଦାରଖ କରିବାକୁ । ଗାଁ ପାଖରେ ଜଙ୍ଗଲ—ତା’ ଭିତରେ ଗୋଟାଏ ହସ୍ୟାନ୍ତ ଦହ (ବଡ଼ଦହ) କେଶରୀ ବଂଶ ରାଜାମାନେ ସେ ଦହ ଖୋଳାଇଥିଲେ । ଭରା ପାଣି । ତା ଭିତରେ କୁମ୍ଭୀର, ସାପ, ମାଛ, ମଗର ପୁରି ରହିଥାନ୍ତି । ମାଛମାନ ଯେ ବାପ, ତାଙ୍କ ଦେହରେ ରୁମ ହୋଇଯାଇଥାଏ । ଗୋଟେ ଗୋଟେ ମାଛଙ୍କ ଦେହରେ ପକ୍ଷୀ ଲଗି-ଯାଇଥାଏ । କେଉଁ କାଳର ମାଛ ମାଁ ୭ କଏ ଧରୁଛି ? କଏ ମାରୁଛି ?

ଗୋରାସାଇବ ସେଇ ପୋଖରୀ କୂଳରେ ଡେରା ପକାଇଥାଏ । ସାଇବ ଆସିଛି ବୋଲି ଗାଁରେ ଗୁନ୍ଦାଆ ପଶି ଯାଇଥାଏ । ଗୋରା ସାଇବକୁ ସେକାଳେ ଭାରି ଡର । ସେ ତ ଆଉ ଠେଙ୍ଗା ବାଡ଼ି, ସାବଳ, ଖଣ୍ଡା, ଟାଙ୍ଗିଆ କଥା ନୁହଁଇ—ତା ପାଖେ ଏମିତି ଯନ୍ତ୍ର ଥାଏ ଯେ—ଟିପିଦେଲା ମାତ୍ରେ ଠୋକନା ଶବ୍ଦ ହୋଇ ଚାଁଅଡ଼ଜାରେ ଲୋକ ଏକା ଥରକେ ମରି ତଳେ ପଡ଼ିବେ । (ବାପୁ ! କୁଆଡ଼େ ଗଲେ ସେ ସାଇବ । କୁଆଡ଼େ ଗଲା ସେ ଯୁଗ !) ସାଇବର ମାଛ ଖାଇବାକୁ ମନ ହେଲା । ହୁକୁମ ଦେଲା—ପକାଅ ଜାଲ । ମାହାଳ କଏ ଜାଲ ପକାଇବ ? କଣ କମ୍ ପାଣି ! ଭୟାନକ ଗଭୀର । ତଳେ କାଳୀୟ ନାଗ ଲୁଚିଛି—। ଲୋକମାନେ

Digitized by srujanika@gmail.com

ଉଠି ଉଠି ହାତ ଯୋଡ଼ି ଭୂଇଁରେ ପଡ଼ି କହିଲେ--ହଜୁର ! ଧର୍ମାବତାର ! ଅଥଳ ଥଳ ପାଣି--ରସାତଳ ଗମ୍ଭୀର—ଜାଲ ପକାଇବା ସହଜ କଥା ନୁହେଁ । ସାଇବ ଖୋଲିକି ଚଢ଼େଇ କହିଲା—କେତନା ଗହିର୍ ହୋଗା ଏ ପୋଖ୍‌ରୀ ? ସଭିଏଁ ସେଇଠା ମୁହଁକୁ ଅନାଇଲେ । କିଏ କଳନ୍ତି ସେ କିଏ କହିବ ? ବରକନ୍ଦାଜଙ୍କୁ ହୁକୁମ ହେଲା—ଯାଓ—ଡଙ୍ଗା ଲେକର ଦେଖୋ । ବରକନ୍ଦାଜ ମାନେ ତଳେ ପଡ଼ି କହିଲେ—ହଜୁର ! ଗୁଳିକରି ମାରନ୍ତୁ—ଦହ ଭିତରକୁ ଠେଲି ଦେଇ କାଳୀୟନାଗ ଆଉ ଗୋମୁହାଁ କୁମ୍ଭୀର ମୁହଁକୁ ଠେଲନ୍ତୁ ନାହିଁ । ସାଇବ ଅଡ଼୍ଆରେ ପଡ଼ିଲା । କଣ କରିବ ? କେମିତି କଳିବ କେତେ ଗମ୍ଭୀର ପାଣି ଅଛି ଦହରେ ? ପଚାରିଲେ—କୋନ୍ ବୋଲେଗା କେତ୍‌ନା ଗିହିର୍ ହୈ ଏ ପୋଖରୀ ? ମିଶ୍ରି ଅବଧାନେ ସେଠି ଠିଆ ହୋଇଥିଲେ । ହାତ ଯୋଡ଼ି କହିଲେ ଗୋଲାମ୍‌କୁ ହୁକୁମ୍ ହେଉ । ସାଇବ ଖୁସି ହୋଇଗଲା । ସମସ୍ତେ ଆଚମ୍ବିତ ହେଲେ । ମିଶ୍ରି ଅବଧାନେ କଣ ପାଣିରେ ପଶିବେ ? ତାଙ୍କୁ କଣ ଜୀବନ ପିତା ଲାଗିଲାଣି କି ? କିନ୍ତୁ ଅବଧାନେ ପାଣିରେ ପଶିଲେ ନାହିଁ । ଖଣ୍ଡିଏ ବାଉଁଶ କାଣି ଆଣିଲେ । ଦହ କୂଳପଟେ ବୁଲି କାଳ ପାଣିକୁ ମାପିଲେ, ତା'ପରେ ଦହର ଚଉପୀମା ମାପିଲେ । ଡେ଼ର ବେଳ ଯାଏଁ କଣ ଅଙ୍କ ଗୁଣିଲେ । ଖଡ଼ି ଗୋଟାକୀ ଘୋରିଲେ । ତାପରେ ପାଠିକରି କହିଲେ—ହଜୁର୍ । ଦହ ମଝିରେ ପଚାଶଫୁଟ୍ ପାଣି ହୋଗା । ସାଇବ ସାଙ୍ଗସାଙ୍ଗେ ନିଜେ ଡଙ୍ଗାରେ ବସି—ଦହ ଭିତରେ ଜାଲ ପକାଇଲା । ସତକୁସତ ପାଣି ୨୫ ଫୁଟ୍ ଅନ୍ଦାଜେ ହେବ । ମାଛ ମଲା । ସାଇବ ଖାଇଲା । ମନ ବୋଧ ହେଲା । ତା ପରେ କହିଲା --ବୋଲାଓ ଅବଧାନକୋ । ମିଶ୍ରି ଅବଧାନ ଆସିଲେ । ସାଇବ ପଚାରିଲା—ତୁମ୍‌କୋ କୈସେ ମାଲୁମ୍ ପଡ଼ା ଅବ୍‌ଧାନ୍ ? ଅବଧାନେ ଟିକେ ହସି ଦେଇ ହାତଯୋଡ଼ି କହିଲେ—ହଜୁର । ସେ ସବୁ ଗଣିତ ବିଦ୍ୟା । ତାକୁ ଏ ଥିଲେ ଜଣା ପଡ଼େ । ସାଇବ ଖୁସି ହୋଇ ପାଞ୍ଚଟଙ୍କା ବକ୍‌ସିସ୍ ଦେଲା ।

ଏମିତି ଅଙ୍କ ଭଲ ଆଉ ଆଜିକାଲି ଅଛି ? ସେ ବ୍ରହ୍ମବିଦ୍ୟା କି ଆଉ ଅଛି ଭଲ ?

Digitized by srujanika@gmail.com

"ସାତ ତାଳ ପାଣି—ସାତତାଳ ପଙ୍କ
ତହିଁ ଭିତରେ ବସିଛି ଧରମ ବକ
ଧରମବକର ତିନି ତିନି ପାଦ
ପାଦକେ ଧରିଛି ଚଉଦ ବ୍ରହ୍ମାଣ୍ଡ ।

କମ୍ବା

ପୋଖରୀ ଗୋଟିକ ଗୁରୁ ଚୌରସ
ତହିଁ ଚାଡ଼ଅଛି ଅଣ୍ଡିର ହଂସ
ଅଣ୍ଡିର ହଂସର ତିନି ତିନି ଛୁଆ
ମୂର୍ଖ ପଚାରୁଛି କହ ପାଠୁଆ' ।

କହ—କହ—। ପାଠୁଆତ ହୋଇଛ—କହିଲ ଦେଖି ଏହାର ଅର୍ଥ ? "ହଂ" ଅର୍ଥ କଣ— "ସ" ଅର୍ଥ କଣ ? "ଅଣ୍ଡିରା" କାହାକୁ କହି ? "ଅଣ୍ଡିର ହଂସର ଛୁଆ କପରି ହୁଅଇ ? ଏସବୁ ବ୍ରହ୍ମ-ବିଦ୍ୟା—ଗୁରୁଘର ପାଠ—ସ୍ବାକୁ ନସାଧିଲେ କିଏ କହିବ ? ସେ ବିଦ୍ୟା-ଗଲା—ସେ ବିଦ୍ୟାର୍ଥୀ ବି ଗଲେ । ତେମେ ତ ପାଠ ପଢ଼ୁନ—ପଢ଼ୁଛ ଶାଠ । ଘୁଡ଼ୁଛ ଚନ୍ଦନ—ପୋଛୁଛ କାଠ ।

ଆହା—ହା—ସେ ପାଠ କୁଆଡେ଼ ଗଲା ? କୁଆଡେ଼ ଗଲା ସେ ଗୀତ ଛାନ୍ଦ । କି ରସ ନଥିଲା ସେଥିରେ !!! ତୁମ ପାଠରେ ସେ ରସ କାହିଁ ? କାଲପରି ମନେ ପଡ଼ୁଛି । ସକାଳ ଓଳି ଲେଖାପାଠ । ଓପରଓଳି ବହିପାଠ—ଗୀତ ଛାନ୍ଦ । "ଗୋପିଭାଷା"—"ନଟୁରେଖା" ଆହା—ହା—ହା କଇ ସେଟେ ! "ନଟୁରେଖା" । କୃଷ୍ଣଙ୍କର ନଟୁଟି ହଜିଗଲା । ନଟୁ ନଟୁ ବୋଲି କେତେ କାନ୍ଦିଲେ, ମା ଯଶୋଦା ଆସି କେତେଥର ବୁଝାଇଲେ—ସରଳବଣୀ ପାଟିରେ ଗୁଂଜିଲେ—ସବୁ ଥୁଥୁ କରି କାଢ଼ିଲେ ପାଟିରୁ—କୃଷ୍ଣ ନ ବୁଝନ୍ତି—ବେଶୀ ବେଶୀ ରାହାଧରି କାନ୍ଦିଲେ । ମା' ଯଶୋଦାଙ୍କ ମନ ବିକଳ ହେଲା । ପାଇପାଳର ଗୋପାଳୁଣୀ ଆସି ରୁଣ୍ଡ ହୋଇଛନ୍ତି—ମାଇଁ ରାଧିକା ଆସି ପହଞ୍ଚିଲେ—କୃଷ୍ଣ ତାଙ୍କୁ ଦେଖାଇ

Digitized by srujanika@gmail.com

କହିଲେ—ବୋଉଲୋ । ମୋ ନଥ୍ ଯୋଉଡାକଡାକ ଏଇ ପାଇଁ ଲୁଚେଇ ରଖିଛି ତା' ଶାଢ଼ୀ ଭିତରେ । ରାଧା ଚମକି ପଡ଼ିଲେ । କି ନଥ୍ । କେତେ-ବେଳେ ସେ ନେଲେ ? ମନାକଲେ ରାଧା । ଏଡ଼କ ମିଛୁଆରେ ତୁ କହ୍ନେଇ ? କୃଷ୍ଣ ଅଙ୍ଗୁଠି କଲେ—ନାଇଁ ତୁ ତୋ ବସ୍ତ୍ର (ଶାଢ଼ୀ) ଖୋଲି ଦେଖା । ଯଶୋଦା ଠିଆ ହୋଇଛନ୍ତି । କୃଷ୍ଣ ରାଧାଙ୍କର ଛାତି ଉପର ବସ୍ତ୍ର (ଶାଢ଼ୀ) ଖସାଇ ଦିଅନ୍ତେ—ରାଧା କମ୍ପି ଉଠିଲେ । ଏ କଣ । ଏକ ଆଚମ୍ବିତ କଥା । ସତକୁ ସତ ନଥ୍ ଦୁଇଟି ଖସି ପଡ଼ିଲା ଭୂଇଁ ଉପରେ । ଆହା—ହା—ହା—କି ରସରେ ! ସେ. ରସ ଆଉ କିଏ ଫୁଟାଇବ ? କାହିଁକି ଭୂତକେଳି କଥା ଦେଖନ୍ତୁ । ରାତି ଅଧ—ନିଶା ଗର୍ଜୁଛି—ରାଧା ଯାଇଁ ଘରେ ଶୋଇଛନ୍ତି—ଜଟିଳା କୁଟିଳା ଜଗିଛନ୍ତି—ନପୁଂସକ ଚନ୍ଦ୍ରସେଣା ଗଉଡ଼ ରାଧାଙ୍କୁ ରାତି ଅଧରେ ପହରା ଦେଉଛି ଗୋଡ଼େଗୋଡ଼େ, ସେଇ ରାତି ଅଧରେ ରାଧାଙ୍କ ଶୋଇବା ଘରେ ପଶିଲା ଭୂତ । ଭୂତ ଭୂତ ବୋଲି ଜଟିଳା କଳକଳା ଉଡ଼ ଘୁଡ଼ ଘରୁ ଦଉଡ଼ିଲେ ପଦାକୁ । ଚନ୍ଦ୍ରସେଣା ତରକ୍ତରେ ଦଉଡ଼ୁଛି । ଶାଶୂ ଜଟିଳା—ନଣନ୍ଦ କୁଟିଳା ବାଉଳି ମାଉଳି ହୋଇ ଦାଣ୍ଡରେ ବୋବାଳି ଛାଡ଼ୁଛନ୍ତି । ରାଧା ମାତ୍ର ଗୁନ୍ତିଦମ୍ଭ ଧରି ଠିଆ ହୋଇଥାନ୍ତି ଘର ଭିତରେ । ତାଙ୍କୁ କଣ ଅଜଣା ଅଛି ? ସେ ପରା ଆଦ୍ୟମାତା ଶ୍ରେ ଯୋଗରୂପିଣୀ ? ସେ ଜାଣିଲେ ଏ ଭୂତ ନିଶ୍ଚେ କହ୍ନେଇ । ସତକୁ ସତ କୃଷ୍ଣ ନିଜରୂପ ଧରି ମାଇଁକୁ ଗେଲ ଆଦର କରିଲେ—କେଳି କଲେ ।

ଆହା—ହା—ହା—କୁଆଡ଼େ ଗଲା ସେଦିନ ? ସେ ଭୂତକେଳି ? ଆମେ ପେଟରେ ସ୍ବାକୁ ୭/୮ ବର୍ଷ ବୟସରେ ପଢ଼ିବୋଲି ମନେ ରଖୁଥିଲୁ—! ଏବେ ଜଳ ଏମିତି ଲସ ଦବୁ ପଡ଼ା ହେଉଛି ?

ଘୁଡ଼ି—ଘୁଡ଼ି । କଣ ଆଉ ମିଳିବ ସେ କଥାରୁ ? ଆଉ ଝୁରି ହେଲେ କଣ ସେ କାଳ ଫେରିଆସିବ ? ସେ କାଳ ପଖାଳ ଆଉ ମିଳିବ ନାଇଁ । ଏକାଳେ ବି ପଖାଳ ଅଛି । ପଖାଳ ଖିଆ ଲୋକ ଅଛନ୍ତି । ଏକାଳ ପଖାଳରୁ ଏକାଳର ବୈଜ୍ଞାନିକମାନେ କେତେକଥା ଆବିଷ୍କାର କରିଲେଣି ।

Digitized by srujanika@gmail.com

ଏକାଳ ପଖାଳରେ କୁଆଡ଼େ 'ପ୍ରିଷ୍ଟ' ନାମକ 'ଜୀବନୀକା' ଅଛି । ଭିଟାମିନ—'ବି'—ଭିଟାମିନ୍—'ସି' ଆଦି କେତେ ଉପଦେୟ ଖାଦ୍ୟପ୍ରାଣ ଏକାଳ ପଖାଳରୁ ବାହାରିଲଣି । ଏକାଳ ସେକାଳ ଠାରୁ କେତେ ଗୁଣରେ ଅଧିକା ହେଲଣି । ମାତ୍ରକ ଆମେ ସବୁ ସେକାଳର ଲୋକ । ଆମେ ଖାଲି ଝୁରି ହେଉଛୁ—ସେକାଳ ପଖାଳର ବାସନାକୁ । ସେ ବାସନା ଆଜି ଏ କାଳ ପଖାଳରେ କାହିଁ ? ଏ କାଳେ ତ ତୁମେ କେତେ ବାସନା ବାହାର କଲଣି । ମାତ୍ରକ ନୂତନ ବାସନା ଲାଗି ଆମର ଆଉ ବାସନା ନାହିଁ । ଆମେ ସବୁ ସେ କାଳର ଲୋକ, ଆମେ ସେଇ ପୁରାତନ ବାସନାକୁ ଝୁରି ହେଉଛୁ । ତେମେ ଆମକୁ ଦୟାକର—ଆମକୁ କ୍ଷମା କର । ଆମ କଥା ଶୁଣି ହସିବ ତ ହସ —ମାତ୍ର ଆମକୁ ହସ ନାହିଁ ।

କାହିଁକି ବା ହସିବ ? ଆମେ ଯେମିତି ଆମକାଳକୁ ସୁଖ ପାଉଥିଲୁ—ତୁମେ ଯେମିତି ତୁମକାଳକୁ ସୁଖ ପାଉଛ କି ? କେଜାଣି, ମୋର ତ ଯାହା ମନେ ହେଉଛି—ତୁମେମାନେ ସବୁ ବାବନାଭୂତ ଭଳି ଡିଆଁ ମାରୁଛ । ତମର ସବୁ କୋଉ କଥକୁ ନଗା ନା ପଧା ଅଛି ? ତୁମେ ସବୁ ବର୍ତ୍ତମାନକୁ କେତେ କେତେ ଆଣି ଝଲସା କଥା ବାହାର କଲଣି । ତୁମ ମୁଣ୍ଡ ଉପରେ ପଂଖା ଘୂରୁଛି—ତୁମ ଆଖି ଆଗରେ ବିଜୁଳିବତି ଦାଉ ଦାଉ ଜଳୁଛି । ତୁମ କାନ ପାଖେ ରେଡ଼ିଓ ବାଜୁଛି । ତେମେ ସବୁ କେତେ ଭଙ୍ଗିରେ ପୋଷାକ ପିନ୍ଧୁଛ । ଗାଡ଼ି ମଟର ଚଢ଼ୁଛ । ହେଲେ—ତେମେ ତ ଥୟ ପଡ଼ିଲଭଳି ଦିଶୁନାହଁ । ତୁମମାନଙ୍କୁ ସତେକି କିଏ ବାଇବିଛା ଲଗେଇ ଦେଇଛି । ତୁମେମାନେ ଗୋଟେ ଜାଗାରେ ସମଳା ପଡ଼ୁନାହିଁ । ତୁମେ ରହିଛ ଠାଏ—ତୁମ ମନ ଉଡ଼ୁଛି ଆଉଠାଏ । ତୁମେ ଯାହାକୁ ଧରିଛ—ତା' ଉପରେ ତୁମ ହାତ ମୁଠା ପଡ଼ୁନାହିଁ । ଯାକୁ ଧରିବ ନା ତାକୁ ଧରିବ—ଏଇ କଥା ଭାବି ଭାବି ତୁମେ ସବୁ ଅଧିର । ମୋଟ କଥା—ତୁମମାନଙ୍କ ମୁଣ୍ଡ ଥୟ ନାହିଁ । ଆମେ କିନ୍ତୁ ଖୁବ୍ ଥୟ ଥିଲୁ ସେକାଳେ । ଅନ୍ଧାର ଭିତରେ ସାପ ବାଘ ଭାଲୁ ଘେରା ଜଙ୍ଗଲ ଭିତରେ, କାଦୁଅ ପଙ୍କ ଭିତରେ, ଅଭାବ ଭିତରେ, ରୋଗ ଭିତରେ ଆମେ ଯେତେ ଥୟଥିଲୁ,

Digitized by srujanika@gmail.com

ସେକଥା ତୁମେ କଳ୍ପନା ବି କରିପାରିବ ନାହିଁ । ଶେଷ କଥା ହେଲା— ସେକାଳ ପଖାଳ ଆମକୁ ଯୋଉ ଆଇଚା ପଣ ଦେଇଥିଲା—ଏକାଳେ ତୁମେମାନେ ସେଇଟକ ପାଇନାହଁ । ହଉ ହଉରେ ବାପା ! ଈଶ୍ୱର ସାହା ତୁମମାନଙ୍କୁ ହୁଅନ୍ତୁ ।

*

Digitized by srujanika@gmail.com

# ଭୌତିକ ରଜନୀର ଟ୍ରାଜେଡି

[ ଦୟାକରି ଏ ଗଳ୍ପଟି ରାତରେ ପଢ଼ନ୍ତୁ ]

ମୁଁ ଜାଣେ, ଆପଣମାନଙ୍କ ମଧ୍ୟରୁ ଅନେକ "ଭୂତ" ବିଶ୍ୱାସ କରନ୍ତି ନାହିଁ । ମାତ୍ର ଭୂତକୁ ଭୟ କରନ୍ତି । ଆଉ କେତେକ ଭୂତ ଅଛି ବୋଲି ବିଶ୍ୱାସ କରନ୍ତି—ମାତ୍ର ଭୂତ ଦେଖି ନାହାନ୍ତି କେବେ । ଅସଲ କଥାଟା କଣ ଜାଣନ୍ତି ? ପ୍ରାଣୀବିଜ୍ଞାନ ଅଧ୍ୟାପକ ଯାହା କହନ୍ତି ଶୁଣନ୍ତୁ—ନହେଲେ ପ୍ରାଣୀର ସ୍ୱରୂପ ବୁଝି ହୁଏନାହିଁ । ନିଜେ ବାଘଟିଏ ହେଲେ ପ୍ରାଣୀ ଯାଇ ବାଘକୁ ବୁଝି ହେବ, ନିଜେ ମେଣ୍ଢାଟିଏ ହେଲେ ଯାଇ ମେଣ୍ଢାଟିକୁ ଆବିଷ୍କାର କରିହେବ । ଗଧକୁ ଜାଣିବାକୁ ହେଲେ କେବଳ ଗଧ ଲାଙ୍ଗୁଡ଼ ଧରି ଚାଲିଲେ ହେବ ନାହିଁ—ନିଜକୁ ଗର୍ଦ୍ଦଭରେ ପରିଣତ କରିବାକୁ ପଡ଼ିବ । ମନୁଷ୍ୟ କିନ୍ତୁ ମାନବୀୟ ଦୃଷ୍ଟିକୋଣରୁ ପ୍ରାଣୀଜଗତର ବିଚାର କରି ପ୍ରାଣୀତତ୍ତ୍ୱବିତ୍ ହୋଇ ବସେ । ମଣିଷ ନିଜେ ବୁଝିପାରେ ନାହିଁ—ମଣିଷ ହୋଇ ମଣିଷକୁ ବୁଝିବା ତାର କେଡ଼େ ପାଣ୍ଡିତ୍ୟ । ନରମାୟା କୁଆଡ଼େ ନାରାୟଣଙ୍କୁ ବି ଅଗୋଚର । ଅଥଚ ନରର ମାୟା ବୁଝିବା ପାଇଁ ନାରାୟଣ ନିଜେ ନର ଅବତାରଙ୍କୁ ସାଙ୍ଗରେ ଧରି ପୃଥିବୀରେ ଆବିର୍ଭୂତ ହୁଅନ୍ତି । ମହାଭାରତରେ ଶ୍ରୀକୃଷ୍ଣ ଓ ଅର୍ଜୁନ ନାରାୟଣ ଓ ନର ଋଷିଙ୍କର ଅବତାର ବୋଲି କଥିତ ଅଛି ।

ସେହିପରି ଭୂତ ଦେଖିବାକୁ ହେଲେ, ଭୌତିକ ଜଗତର ରହସ୍ୟ ବୁଝିବାକୁ ହେଲେ, ନିଜେ ଭୂତ ହେବାକୁ ପଡ଼ିବ । ନିଜେ ଭୂତ ନହେଲେ ଭୂତଙ୍କ କଥା ଜାଣି ହୁଏ ନାହିଁ; ମଣିଷ ଭଳି ଆଚରଣ କରି କେହି କେବେ

Digitized by srujanika@gmail.com

ଭୂତ ଦେଖି ପାରିବ ନାହିଁ । ଭୂତ ହେଲା ପବନ ସ୍ୱରୂପୀ—ଆଉ ଭୌତିକ ଅନୁଭୂତିଟା ହେଲା ଅତି ସୂକ୍ଷ୍ମ ବ୍ୟାପାର । ଆଧିଭୌତିକ ବୁଦ୍ଧି ଚେତନାର ସ୍ଥୂଳ ସଂସର୍ଗରେ ଆସିଲେ ଭୌତିକ ସୂକ୍ଷ୍ମ ଚେତନାଟା ନଷ୍ଟ ହୋଇଯାଏ । ଯେଉଁମାନେ ଭୂତ ଦେଖି ପାରୁନାହାନ୍ତି; ସେମାନେ ନିଜେ ଭୂତଭଳି ହୋଇପାରୁ ନାହାନ୍ତି ।

କିନ୍ତୁ ଭୌତିକ ରହସ୍ୟ ଉପରେ ପ୍ରବନ୍ଧ ଲେଖିବା ମୋର ଉଦ୍ଦେଶ୍ୟ ନୁହେଁ । ନିଜେ ଅଙ୍ଗେ ଲିଭାଇଥିବା ଭୌତିକ କାହାଣୀଟିଏ କହୁଛି—ଶୁଣନ୍ତୁ । ସବୁ ସ୍ଥୁଏ ବୁଝିପାରିବେ । ସବୁ ପାଠୁଆ ଲୋକଙ୍କ ଭଳି ମୁଁ ମଧ୍ୟ ଭୂତର ଅସ୍ତିତ୍ୱ ଉପରେ ବିଶ୍ୱାସ କରୁ ନଥିଲି । ତାର ଏକମାତ୍ର କାରଣ ମୁଁ ଭୂତ ଦେଖି ନଥିଲି । ଭୌତିକ ଅସ୍ତିତ୍ୱ ସମ୍ବନ୍ଧେ ତର୍କ ହେଲେ ମୁଁ ତା ବିରୁଦ୍ଧରେ ଅଖଣ୍ଡ ଯୁକ୍ତି କରି ବସେ । କିନ୍ତୁ ଏ କଥା ବି ସମାନ ସତ୍ୟ ଯେ, ଭୂତ ଭୟଟା ମୋର ରକ୍ତଗତ । ମୋର ପୂର୍ବ-ପୁରୁଷମାନେ ସେ ଭୟଟାକୁ ମୋ ସଂସ୍କାରରେ ମିଶାଇ ଦେଇଛନ୍ତି । ବିଶେଷତଃ ମୋର ଜନ୍ମ ଗୋଟିଏ ମଫସଲ ଗ୍ରାମରେ ହୋଇଥିବାରୁ ଭୂତ ସମ୍ପର୍କରେ ନାନା ଭୟଙ୍କର ଗଳ୍ପ ମୋତେ ମୋର ବାପା, ମାଆ, ବୁଢ଼ାବାପା ଓ ବୁଢ଼ୀମା ଏବଂ ଗ୍ରାମର ଅନ୍ୟାନ୍ୟ ଲୋକେ ଶୁଣାଇ ଆସିଛନ୍ତି ପିଲାଦିନରୁ । ମୋ ବୁଢ଼ୀମା ତ କହେ, ସେ ସ୍ୱଚକ୍ଷୁରେ ଭୂତ ଦେଖିଛି । ତାକୁ କୁଆଡ଼େ ତାର ଝିଆସୁଣୀ ବେଳେ ନିତି ରାତି ଅଧରେ ଭୂତ ମାଡ଼ି ବସୁଥିଲା । ଏବେ ଯଦି ବୁଢ଼ୀମା ବଞ୍ଚିଥାନ୍ତା, ମୁଁ ତାକୁ ନିଶ୍ଚୟ ପଚାରନ୍ତି—ବୁଢ଼ୀମା ! ତୋ ଝିଆସୁଣୀ ବେଳେ ରାତି ଅଧରେ ତୋତେ ଯେ ମାଡ଼ି ବସୁଥିଲା, ସେ ଭୂତ ନାଁ ଜେଜେବାପା ତୋ ସଙ୍ଗେ ସେତେବେଳେ ଭୂତ-କେଳି କରୁଥିଲେ ? ଛାଡ଼ନ୍ତୁ ସେ କଥା । ଆମ ଗ୍ରାମଟାରେ କିନ୍ତୁ ଭୂତଙ୍କର ଭାରି ଭିଡ଼ ଥିଲା । ଗ୍ରାମ ମଝିରେ ଲବଣୀଖିଆ ବରଗଛରେ ଥିଲା ବ୍ରହ୍ମ-ରାକ୍ଷସ । ରାତି ଅଧରେ ପଥିକ ଆଗରେ ତାଳଗଛ ଭଳି ଲମ୍ବା ହୋଇ ଠିଆ ହୋଇଯାଏ; ଆଉ ଦୁଇଟା ଲମ୍ବା ଲମ୍ବା ସରୁ ହାତ ଉପରୁ ତଳକୁ ଝୁଲାଇ ଝୁଲାଇ, ହୋ ହୋ ହୋଇ ବିକଟାଳ ହସି ଉଠେ । ସେତିକରେ ପଥିକ ରକ୍ତବାନ୍ତି କରି ମରେ । ପଠାଣ ବସ୍ତିର ଠିକ୍ ମଝିଟାରେ ଯେଉଁ

Digitized by srujanika@gmail.com

କଦମ୍ବଗଛ ଅଛି, ସେଥିରେ ପଞ୍ଚାଏ ପଠାଣ ଭୂତ ରହୁଥିଲେ। ଭାରି ପ୍ରତାପୀ ଭୂତ ସେମାନେ। କେହି ଯଦି ମାଛ କି ମାଉଁସ ଧରି ବୈକାଳ ସେ ବାଟେ ଯାଇଛି, ତେବେ ସେଠାରେ ସେମାନଙ୍କର ସଙ୍ଗେ ସଙ୍ଗେ ଦଫା ରଫା ହୋଇଯାଏ। ବାଉଶ ସାହି ମୁଣ୍ଡରେ ଯେଉଁ ଝାଂପୁଆ ସାହାଡ଼ା ଗଛଟା ଅଛି, ସେଠି ଥିଲା ଗୋଟେ ବାଳଝାଂପୁଆ। ବାଳଝାଂପୁଆ ବେଶି କ୍ଷତି କରେ ନାହିଁ। ଦେଖିବାକୁ ତିନିଫୁଟ ଖଣ୍ଡେ ଉଚ୍ଚ ହେବ। ବେଶ୍ ଆକୁଳ ମାକୁଳ କୋଦମୀ ଝିଅ ଭଳି। କିନ୍ତୁ ତା ମୁଣ୍ଡର ଲମ୍ବ ଲମ୍ବ ବାଳ ତାର ଦେହ ଓ ମୁହଁକୁ ଆବୃତ କରି ଭୂଇଁରେ ଘୋଷାରି ହୁଏ। ବାଟୋଇକୁ ଏକା ଦେଖିଲେ ସେ ତା ଆଗରେ ନାଚି ନାଚି ବାଟ ଓଗାଳେ। ଦୁଇପଦ ଗାୟତ୍ରୀ ମନ୍ତ୍ର ହାଙ୍କିଦେଲେ ସେ କେଁ କେଁ ହୋଇ କୁଆଡ଼େ ପଳେଇଯାଏ। ସେଇଟା ଗୋଟାଏ ବାଇଆଣି ବାଲୁଆ ଝିଅ ଭଳି। ଅଳି କରେ—ଅଝଟ କରେ—ମନ୍ଦ ମାଡ଼ ଖାଇଲେ କାନ୍ଦି କାନ୍ଦି ସାହାଡ଼ା ଗଛରେ ପଶିଯାଏ। ଡାକ୍ତରଖାନା ପାଖ କୋଚିଲା ଗଛରେ ଥିଲା ଗୋଟେ ମାଦଳା ଭୂତ। ସେଇଟା ବଡ଼ ସଇତାନ୍। ତାର ହାତନାହିଁ, ମୁହଁନାହିଁ କି ମୁଣ୍ଡନାହିଁ, ଆଖିନାହିଁ କି କାନନାହିଁ। ଗୋଟିଏ ବଡ଼ ମାଂସ ପେଣ୍ଡୁଳା ପରି ଭୂଇଁରେ ଗଡ଼ ଗଡ଼କା ବାଟୋଇ ଆଡ଼କୁ ଧାଇଁ ଆସେ ଓ ବାଟୋଇର ଗୋଡ଼ ଦୁଇଟାକୁ ସାପ ପରି ଗୁଡ଼ାଇ ଧରି ତାର ପିଠିକୁ ଉଠିଯାଇ ଲଦି ହୋଇ-ପଡ଼େ। ବାସ୍, ସେତିକିରେ ବାଟୋଇ ଖତମ୍। ଭୂତଙ୍କ ଭିତରେ ସେଇଟା ଦୁର୍ଣ୍ଣା—କିଛି ମାନେନାହିଁ। ତେବେ ଯଦି କେହି ତତ୍‌କ୍ଷଣାତ୍ ପରସ୍ତ୍ରୀ କରି ବାଁ ହାତରେ ପରସ୍ତା ଧରି ତା ଉପରକୁ ଫୋପାଡ଼ି ଦିଏ, ତେବେ ସେଇଟା ଗଡ଼ ଗଡ଼ ପଳେଇଯାଏ ଦେଇ ଉଭାଇଯାଏ। ଗ୍ରାମର ହାଇସ୍କୁଲ ପାଖରେ ଯେଉଁ ତିନ୍ତୁଳି-ଗଛଟା ଅଛି, ସେଠି ଥିଲା ଗୋଟେ ବାବନା ଭୂତ। ଭୂତଙ୍କ ଭିତରେ ସେଟା ବଡ଼ ଦୁଷ୍ଟ ଟୋକାଭୂତ। (Naughty boy) ଅନ୍ୟମାନଙ୍କ ସଙ୍ଗେ କୌତୁକ ଖେଳିବାକୁ ତାକୁ ଭାରି ମଜା ଲାଗେ। ଖରାଦିନେ ରାତିରେ ଗରମଯୋଗୁଁ ଯେଉଁମାନେ ଦାଣ୍ଡପିଣ୍ଡାରେ ଶୋଇଥାନ୍ତି ବା ସ୍କୁଲ ପିଲାଏ ସ୍କୁଲ ବାରଣ୍ଡାରେ ଶୋଇଥାନ୍ତି, ବାବନାଭୂତ କଣ କରେନା—ସେତେବେଳେ କୋଉ ଖଞ୍ଜରେ ଆସି ସେମାନଙ୍କ ମେଳ ମଝିରେ ଖୁନ୍ଦି ହୋଇ ଶୋଇପଡ଼େ।

Digitized by srujanika@gmail.com

ଶୋଇକରି କାହାକୁ କୁତୁ କୁତୁ କରିଦିଏ ବା କାହାର ନାକପୁଡ଼ାରେ ତାର ସରୁ ଆଙ୍ଗୁଠି ଗେଞ୍ଜିଦିଏ ବା କାହାର ପିଠିକୁ କଣ୍ଟାରେ ଫୋଡ଼ିଦିଏ । କାହାର ନିଦ ହଠାତ୍ ଭାଙ୍ଗିଗଲେ ସେ ଉଠି ଦେଖେତ କେହି ନାହିଁ । କେବଳ କଣ ଗୋଟାଏ ସାଇଁକିନା ଯାଇ ଭଳଆ ଦଉଡ଼ିଯାଇ ସ୍କୁଲ ପାଖ ତେନ୍ତୁଳଗଛରେ ଉଠିଯାଉଛି । ଆଉ ସେଇଥିରୁ ଝିଟି ପଡ଼ୁଛି ଝିର ଝିର ଉଇମାଟି ।

ଏମାନେ ତ ହେଲେ ମନ୍ଦ ଭୂତ । କିନ୍ତୁ ଆମ ଗ୍ରାମରେ ପୂର୍ବେ ଦୁଇଟି କଞ୍ଚା ଡାହାଣୀ ବି ଥିଲେ । ଜଣେ ହେଉଛି ଗୋପିଆ-ମା ଜେଠେଇ, ଆଉ ଜଣେ ଅଗଣାଗୁଡ଼ିଆ ମାଇପ । ଦିନରେ ସେମାନେ କାହା ଘରକୁ ବୁଲିଗଲେ ମଦ ମାଉଁସିଆ ପିଲଟିଏ ଦେଖିଲେ, ତେବେ ସଙ୍ଗେ ସଙ୍ଗେ ସେ ପିଲାଟିର ଦେହର ସମସ୍ତ ରକ୍ତକୁ ନିଜର ଆଖିବାଟେ ଶୋଷିନିଅନ୍ତି । ଫଳରେ ପିଲାଟି ରାତିଯାକ କାନ୍ଦେ ଓ ଅଳ୍ପ ଦିନରେ ଶୁଖି ଶୁଖି ଯାଇ ଶେଷକୁ ମରେ । ଏ କଞ୍ଚା ଡାହାଣୀ ଦିଜଣ ଥିଲେ ଆଣ୍ଠୁକୁଡ଼ୀ । ନିଜ ନିଜର ପିଲାଙ୍କୁ ମଧ୍ୟ ଶୋଷିକରି ମାରିଛନ୍ତି । ମୋ ବୋଉତ ଏ ଦୁଇଜଣଙ୍କୁ କଦାପି ଆମ ଘରେ ପୂରାଇ ଦେଉ ନଥିଲା । ଦିନରେ ସେମାନେ ପିଲାଙ୍କ ରକ୍ତ ଶୋଷନ୍ତି, ଆଉ ରାତି ଅଧରେ ଉଠି ଗୁହ ଚରିବାକୁ ଯାଆନ୍ତି । ପୋଖରୀ କୂଳରେ ଶାଢ଼ୀ ରଖିଦେଇ, ସେମାନେ ଗୁହ ପଡ଼ିଆକୁ ଉଲଗ୍ନ ହୋଇଯାଆନ୍ତି ଏବଂ ସେଠାରେ ଦୁଇହାତ ତଳକୁ ଦେଇ ଗୋଡ଼ ଉପରକୁ ଟେକି ଶୀର୍ଷାସନ ଭଙ୍ଗୀରେ ଗୁହ ଚରନ୍ତି । ଉଲଗ୍ନ ରହନ୍ତି—ଲୁଗା କାଳେ ଛୁଆଁ ହୋଇଯିବ । ଖାଇବା ହାତରେ ବସ୍ତ୍ର ନଲଗାଇ ମୁହଁରେ ଗୁହ ଖାଇବା କୌଶଳ ତାଙ୍କୁ ବେଶ୍ ଜଣା । ମୋ ବୋଉ ଦୁଇ ଥର ଏପରି ଅବସ୍ଥାରେ ତାଙ୍କୁ ଦେଖିଛି ।

ନଈକୂଳ ପାଖ ମଶାଣିରେ ଥିଲେ ଅସଂଖ୍ୟ ଚିରୁଗୁଣୀ ଓ ପିତାଶୁଣୀ । ବାଉଁଶବଣିଆରେ ଥିଲେ ଅସଂଖ୍ୟ କାଚଝୁଣୁଝୁଣୁ ଡାହାଣୀ । ଏମାନେ ସବୁ ମାଇକିନା ଭୂତ । ଭୌତିକ ଜଗତରେ ଡାହାଣୀଗୁଡ଼ିକ ହେଉଛନ୍ତି ରସିକା, ପ୍ରେମିକା । ଚିରୁଗୁଣୀଗୁଡ଼ାକ ପୁତ୍ରସମ୍ବଳା ଜନନୀ ।

Digitized by srujanika@gmail.com

ଆଜ ପିଚାଶୁଣୀଗୁଡ଼ାକ ଦୁଃଖିନୀ ବାଳବିଧବା ଭଳି — ସେଉଁମାନେ କ ଜୀବନଯାକ ଯେଉଁ ଡାଳରେ ବସିବାକୁ ଯାଇଛନ୍ତି ସେ ଡାଳ ଭାଙ୍ଗିପଡ଼ୁଛି — ଆଜ ଯେଉଁ କୂଅରେ ପାଣି ପିଇବାକୁ ବସିଛନ୍ତି, ସେ କୂଅର ପାଣି ଶୁଖିଯାଇଛି । ଭୌତିକ ଜଗତର ବ୍ୟର୍ଥତା, ହତାଶା ସେମାନଙ୍କ ଭାଲପଟରେ ଲେଖିଛି ଅପଦେବତା ।

କିନ୍ତୁ ଏ ସବୁ ହେଲେ ମଣିଷଭୂତ । ପଠାଣ ସାହବର କଂସେଇ-ଖାନାର ଠିକ୍ ଅଳ୍ପଦୂରକୁ ଥିଲେ ବହୁତ ଗୋରୁଭୂତ । ସେମାନେ ମଧ୍ୟ କମ୍ ହିଂସ୍ର ନୁହନ୍ତି । ସେମାନଙ୍କ ମୁହଁଟାମାନ ଗୋରୁ ମୁହଁ ଭଳି; କିନ୍ତୁ ଥୋମଣି ଉଠିଯାଇ କେବଳ ଦୁଇଧାଡ଼ି ଦାନ୍ତ ଦେଖାଯାଉଥିବାରୁ ବେଶ୍ ଭୟଙ୍କର ଦିଶେ । ମଣିଷଭଳି ସେମାନେ ଦୁଇ ଗୋଡରେ ହିଁ ଚାଲନ୍ତି, ଆଗ ଦୁଇଗୋଡ଼ ଉପରକୁ ଟେକିରଖି । କେତେବେଳେ ମାରଣା ଷଣ୍ଢ ଭଳି ସେମାନେ ବିରାଟ ଆକୃତି ଧରି ଶିଙ୍ଗରେ ମାଟି ଖୋଳି ଖୋଳିକା, ସଁ ସଁ ହୋଇ ହିଁ ହିଁ ହସି, ଲଞ୍ଜଟେକି ଆଖିରେ ହିଂସ୍ର ତେରଛା ଚାହାଣୀ ହାଣି ବେକର କମଳ ଝୁଲାଇ ଝୁଲାଇ, ହଲି ହଲି ବାଟୋଇ ପାଖକୁ ମାଡ଼ି ଆସନ୍ତି । ଗାୟତ୍ରୀମନ୍ତ୍ର ବି ସେମାନଙ୍କୁ କାଟ୍ କରେନାହିଁ । ଗୋରୁକଟା ଓ ଗୋରୁଖିଆ ପଠାଣ ଦେଖିଲେ ସେମାନେ ତାଙ୍କୁ ଛୁଅନ୍ତି ନାହିଁ । ମାତ୍ର ପଠାଣଙ୍କ ଅପେକ୍ଷା ଗୋରୁବିକା ବ୍ରାହ୍ମଣଙ୍କ ଉପରେ ତାଙ୍କର ଉତ୍ପାତ ଖୁବ୍ ବେଶି ।

ଛାଡ଼ନ୍ତୁ ବର୍ଣ୍ଣନା କଲେ ସରିବ ନାହିଁ । ଏ ସବୁ ଭୂତ ଡାହାଣୀଙ୍କ ବ୍ୟତୀତ ଗ୍ରାମରେ ସାତ ଭଉଣୀ ଗ୍ରାମଦେବତା ବି ଅଛନ୍ତି । ପିତାଖାଇ ଠାକୁରାଣୀ, କନାଖାଇ ଠାକୁରାଣୀ, ବାସୁଳେଇ ଠାକୁରାଣୀ, ଜାଗୁଳେଇ ଠାକୁରାଣୀ, କୁତାମ ଚଣ୍ଡୀ ଓ ଆଲମ ଚଣ୍ଡୀ ନାମଧେୟା ଠାକୁରାଣୀମାନଙ୍କ ପୀଠସ୍ଥାନ ଆମ ଗ୍ରାମ । ଯେତେ ସବୁ ବଡ଼ ବରଗଛ ଓ ସାହାଡ଼ାଗଛ ଅଛି ସେ ସବୁ ସେମାନଙ୍କର ଆସ୍ଥାନ । ଦିନରେ ଆପଣ ଦେଖିବେ ଦୁଇଖଣ୍ଡ ମାତ୍ର ପଥର ଦେହରେ ସିନ୍ଦୂରବୋଳା ହୋଇଛି । ଅଗଣିତ ଭଙ୍ଗା ଅଭଙ୍ଗା ମାଟି ଘୋଡ଼ାଟିମାନ ଥୁଆ ହୋଇଛନ୍ତି । ମାତ୍ର ରାତି ଅଧରେ ଠାକୁରାଣୀ

Digitized by srujanika@gmail.com

ସବୁ ସ୍ୱଦେହରେ ସ୍ୱ ସ୍ୱ ବାହାନରେ ବସି ଗ୍ରାମ ପରିକ୍ରମା କରନ୍ତି । ବେଶୀ ଉଞ୍ଚା ନୁହନ୍ତି । ହାତେ ଲମ୍ବର ଟିକିଟିକି ଝିଅନ୍ତା ଠାକୁରାଣୀ ମୂର୍ତ୍ତିମାନ । ଶାଢ଼ୀ ପିନ୍ଧି, ଅଳଙ୍କାରମାନ ପିନ୍ଧି, କଜଳ ସିନ୍ଦୂର ଲଗାଇ, ମୁଣ୍ଡବନ୍ଧି ରୁଣୁ ଝୁଣୁ ନୂପୁର ଶବଦ କରି କରି ଗୁଲୁ ରୁ ଗୁଲୁ ରୁ ହୋଇ, ସେଇ ମାଟି ଘୋଡ଼ାଟିମାନ ଉପରେ ବସି ଗାଁ ଦାଣ୍ଡରେ ରାତିଅଧରେ ବୁଲୁଥାନ୍ତି । ସାଙ୍ଗରେ ଥାଆନ୍ତି ଠାକୁରାଣୀଙ୍କ ପୁଅଝିଅମାନେ । ପିଠାଖାଇ ଠାକୁରାଣୀ ଯାଆନ୍ତି କନାଖାଇ ଠାକୁରାଣୀଙ୍କୁ ଦେଖା କରିବାକୁ । ସେ ତାଙ୍କ କକା-ଝିଅ ଭଉଣୀ । ବାସୁଦେଇ ଯାଆନ୍ତି ଯାଗୁଲାଇଙ୍କ ସଂଗେ ଆଳାପ କରିବାକୁ । ସେ ତାଙ୍କର ମାଉସୀ ଝିଅ ଭଉଣୀ । ସାତ ଭଉଣୀମାନେ ଯେଝା ସଂସାର ପାଇଁ ଚିନ୍ତାଥାନ୍ତି : ସାଇ ସାଇରେ ସାତଭଉଣୀ ଭାଗ ବାଣ୍ଟି ଥାଆନ୍ତି । ସେ ସାଇର ଭଲମନ୍ଦ, ଦୁଃଖ ସୁଖ, ଗତ ଆଗତକୁ ସେ ସାଇର ଗ୍ରାମଦେବତା ଦାୟୀ ରହନ୍ତି । ସେ ଜାଣେ ଯେ ସାଇର ମାଆ ଆଉ ସାହା ।

ବସନ୍ତେଇ ଠାକୁରାଣୀ ଆଉ ବାଡ଼ୀ ଠାକୁରାଣୀ ହେଉଛନ୍ତି ଦୁଇ ଭଉଣୀ । ସେମାନଙ୍କର ଘର ଦୁଆର ନାହିଁ । ପିଲା ପିଚିକା ନାହାନ୍ତି । ବାହାଘର ପରେ ପରେ ଚଉଠି ରାତିରେ ଘଇତାମାନଙ୍କୁ ଖାଇ ଆପଣାସ୍ତାଏଁ ରାଣ୍ଡିହେଲେ । କୋଉ କୁଳରେ ତାଙ୍କର କେହି ନାହିଁ । ସେମାନେ ବାରବୁଲା । ଯୁଆଡ଼େ ଯାଆନ୍ତି ମଡ଼କ ଦଡ଼େ—ଡାକ ପଡ଼ିଯାଏ । ଯେଉଁ ଗ୍ରାମକୁ ଯାଆନ୍ତି, ସେ ଗାଁ ମଶାଣି ହୁଏ । ମାତ୍ର ଆମ ଗାଁର ସାତ ଭଉଣୀ ଠାକୁରାଣୀଯାକ ସେ ଦୁଇ ଭଉଣୀଙ୍କୁ ଆମ ଗ୍ରାମକୁ ଛାଡ଼ଦଅନ୍ତି ନାହିଁ । ଫଳରେ ଆମ ଗ୍ରାମରେ ହଇଜା କି ବସନ୍ତ ନଥିଲା । କିନ୍ତୁ ଥରେ କ'ଣ ହେଲା ନା ଆମ ଗାଁର ସାତ ଭଉଣୀ ଠାକୁରାଣୀଙ୍କ ଭିତରୁ ପାଞ୍ଚ ଭଉଣୀ ନଥିଲେ । ଚାଲି ଯାଇଥିଲେ ଯେଝା ବାପଘରକୁ । କାହା ବାପଘର ନରଦା ତ କାହା ବାପଘର ଭିଙ୍ଗାରପୁର । କାହା ବାପଘର ବାଙ୍କିଆଟି ତ କାହା ବାପଘର ବଳାସୁଣୀ । ମୋଟେ ଦୁଇ ଭଉଣୀ ଥାଆନ୍ତି ଗ୍ରାମରେ । ବସନ୍ତେଇ ଆଉ ବାଡ଼ୀ ଠାକୁରାଣୀଙ୍କର ତ ଆମ ଗ୍ରାମ ଉପରେ ଭାରି ଅହନ୍ତା ! ଆମ ଗ୍ରାମର ସାତ ଭଉଣୀ ତ ଭାରି ବଳପୁଷ୍ଟା କଳିହୁଡ଼ୀ;

Digitized by srujanika@gmail.com

ବେଳ ପଡ଼ିଲେ—ଦାନ୍ତ ଲାଗେଇ ଦେବେ। ପାଞ୍ଚ ଭଉଣୀ ତ ନଥାନ୍ତି; ବାଡ଼ି ଆଉ ବସନ୍ତେଇଙ୍କୁ ସୁଯୋଗ ମିଳୁନାହିଁ। ସେ ଦୁଇଭଉଣୀ ପୁଣି ଘର ବଳପୂଆ। ତାଙ୍କୁ କେଉଁଠି ଦୁଇଜଣ ଗ୍ରାମଦେବତା ପାରିବେ ? ପଶିଗଲେ ଗ୍ରାମର ଦୁଇମୁଣ୍ଡ। ପାଞ୍ଚଦିନ ମଧ୍ୟରେ ବସନ୍ତେଇ ଖାଇଲେ ନଅଟି ମୁଣ୍ଡ। (ସେ ବେଳିକି ଖାଇପାରନ୍ତି ନାହିଁ ଚଞ୍ଚଳ) ଆଉ ବାଡ଼ୀ ଠାକୁରାଣୀ ଖାଇଲେ ସର୍ବମୋଟ ପଚିଶ୍ ମୁଣ୍ଡ। ଏଣେ ଏ ଖବର ପାଇ ଦଶମ ଦିନ ରାତିରେ ପାଞ୍ଚ ଭଉଣୀଯାକ ବାପଘରୁ ପଳାଇ ଆସିଲେ। ଗ୍ରାମରେ ପଦାର୍ପଣ ଗୁଞ୍ଜୁରି ଧରି ଗୋଡ଼େଇଲେ ବାଡ଼ୀ ଆଉ ବସନ୍ତେଇଙ୍କୁ। ହଇଲୋ ଛତରଖାଇଏ! ହଇଲୋ ଘଇତା ଖାଇଏ! ହଇଲୋ ଜାଉଁଳିଏ! ହଇଲୋ ଗୋରୁମାଂସ ଖାଇଏ! ଆଣ୍ଠୁକୁଡ଼ୀଏ! ରାଣ୍ଡେ! ତମ ଦିନଯାକ ଘା ହୋଇଯାଉ— କୋଷ୍ଟ ବେମାର ହେଉ, ଝାଡ଼ାବାନ୍ତି ଖାଉ—ଗୋଡ଼ିରେ ଯାଆଲେ ରାଣ୍ଡେ! ମୋ ପିଲାଙ୍କ ଉପରେ ଆଖିଦେଲ ? ତମକୁ ନାଗ ଦାଣୁନି ଲୋ ରାଣ୍ଡେ!

ପାଠକେ ! ଆଉ ଅଧିକା କହିବା ନିଷ୍ପ୍ରୟୋଜନ। ବାଡ଼ୀ ଆଉ ବସନ୍ତେଇଙ୍କୁ କଳି କଜିଆ କରି ଆସେ ନାହିଁ। ବଡ଼ ପାଟିରେ ସେମାନେ ଗଳେଇ ପାରନ୍ତି ନାହିଁ। ଯାହା କରିବେ ଗୁପ୍ତରେ। ନୀରବରେ। ସାତ ଭଉଣୀଙ୍କ କଳକଳା ରଡ଼ିରେ ଗାଁ। ଗୁଡ଼ ଏକା ଦଉଡ଼େ ପଳାଇ-ଗଲେ ଯେ, ବାପ୍, ଆଉ ସେଇଦିନୁଁ ସେମାନଙ୍କର ଦେଖା ନାହିଁ।

ଏ କଥା ଆପଣ ବିଶ୍ୱାସ ନକରି ପାରନ୍ତି। କିନ୍ତୁ ଏସବୁ କଥା ଦେଖିଲାବାଲା, ଲୋକ ଏବେ ବି ଆମ ଗ୍ରାମରେ ଅଛନ୍ତି। ଆଉ ଆପଣ ଯଦି ବିଶ୍ୱାସ କରିବେ ନାହିଁ ବୋଲି ଜିଦ୍ ଧରିଛନ୍ତି—ତେବେ ଦୟାକରି ଏ ଗଳ୍ପଟି ପଢ଼ନ୍ତୁ ନାହିଁ।

ମୋ ଗ୍ରାମର ଏହି ଭୌତିକ ଐତିହ୍ୟ ଏତେ ଋଦ୍ଧିମନ୍ତ ସତ୍ୟ— ମାତ୍ର ଏ ଅଧମ ଭାଗ୍ୟରେ ୧୯୫୧ ମସିହା ଜୁଲାଇ ପନ୍ଦର ତାରିଖ ପର୍ଯ୍ୟନ୍ତ ଏହି ଭୂତ ଓ ଭୌତିକ ଲୀଳା ପ୍ରତ୍ୟକ୍ଷ ଅନୁଭବ କରିବାରେ ସୌଭାଗ୍ୟ ଆସି ନ ଥିଲା। କେତେ ଲୋକ ଭୂତଙ୍କର ଅଲୌକିକ ଲୀଳା ବର୍ଣ୍ଣନା କରିବାର ଏ କାନ ଶୁଣିଛି, ମାତ୍ର ଏ କାନରେ ସେଦିନ ଯାଏ ଭୌତିକ-

Digitized by srujanika@gmail.com

ନୂପୁରଧ୍ୱନି ପ୍ରତ୍ୟକ୍ଷ ଭାବରେ ବାଜ ନଥିଲା । ଏ ଅାଖିରେ ଭୌତିକ ଜଗତର ସେଭଳି ଅଲୌକିକ ରୋମାଞ୍ଚକର ରହସ୍ୟ ଯେପରି ଧରାପଡ଼ି ନଥିଲା । ହାୟ ! ତିରିଶ ବର୍ଷ ବୟସ ପର୍ଯ୍ୟନ୍ତ ଏହି ମହାର୍ଘ ଅଭିଜ୍ଞତା ଲାଗି ପ୍ରାଣ କେତେ ବ୍ୟାକୁଳ ନ ହୋଇଛି ! କେତେ ଲୋକ ଭୂତ ଦେଖିଲେ ଶୁଣିଲେ, ଶୁଣାଇଲେ । ହେଲେ ହେଲେ ମୁହୂର୍ତ୍ତକ ପାଇଁ ସୁଦ୍ଧା ସେ ମହାର୍ଘ ବସ୍ତୁ ମୋର ପ୍ରତ୍ୟକ୍ଷ ହେଲ ନାହିଁ । ମନରେ କେତେ ଅବଶୋଷ !

ଏକୁଟିଆ ହେଲେ ଭୂତ ଦେଖିବାକୁ ସୁବିଧା । ମାତ୍ର ମୁଁ ଏତେ ଭୟାଳୁ ଯେ ହେଲେ ସୁଦ୍ଧା ଏକୁଟିଆ ରାତିରେ ଘରଗୁଡ଼ି ବାହାରକୁ ବାହାରି ନଥିଲି । ମନରେ ଅସନ୍ତୋଷ ରହିଯାଇଛି ତିରିଶ ବର୍ଷ ଯାଏ । ଜୀବନରେ କେତେ ବ୍ୟର୍ଥତା ଆସେ, ଆସିଛି ଆସିବ । ମାତ୍ର ତିରିଶ ବର୍ଷଯାଏ ଭୂତ ନ ଦେଖିବାର ବ୍ୟର୍ଥତା ଠାରୁ ବଳି ଆଉ ବ୍ୟର୍ଥତା ନାହିଁ । ଅନ୍ଧାର ଘରେ ରହିଥାଏ, ଅନ୍ଧାର ଗୁଡ଼ୁଗୁଡ଼ୁ ଭୂତ ଗୁଡ଼ୁଗୁଡ଼ୁ ହୋଇ ପାଖ ଘଷି ହଣ୍ଡୁଡ଼ିଯାଏ । ଚିଙ୍କିଏ ଖେଁକାହିଏ । ଲୁଚିଯାଏ । ରେମାଳିଆ ହାତରେ ପିଲାପିଲିଙ୍କ ମୁହଁକୁ ଠିକେ ସାଉଁଳି ଦିଏ । ମାତ୍ର କାହିଁ ? ଅନ୍ଧାର ଗୁଡ଼ୁଗୁଡ଼ୁ ଭୂତ । ବା ଅନ୍ୟାନ୍ୟ ଭୂତଙ୍କପରି ମୋ ଚକ୍ଷୁରେ ନଷ୍ଟ ହଥିଲା । ହେଲେ ହେଲେ ଦେଖିପାରି ନଥିଲି । ସେଇ ରେମଞ୍ଚକାରୀ ଅଲୌକିକ ରୂପ ଅନ୍ଧାର ଗୁଡ଼ୁଗୁଡ଼ୁ ଭୂତର । ହେଲେ ହେଲେ ଅନୁଭବ କରିନଥିଲି ତାର କୃଷ୍ଣ ଲୋମଶ ହାତର ମୃଦୁ ସାଉଁଳା ସ୍ପର୍ଶ । ହାୟ ଭଗବାନ ! ହାୟ ଭୂତନାଥ ! ! ମୋ ବୋଉ ଦେଖିଲା, ମୋ ବାପା ଶୁଣିଲେ, ମୋ ବୁଢ଼ାବାପା ଭୂତସଙ୍ଗେ ଧନକଅଁଶକୁ ପାଣି ବୋହିଲେ, ମୋ ବୁଢ଼ୀମାଆ ସଙ୍ଗେ ରାତି ଅଧରେ ଭୂତ ଭୂତକେଳି କଲା; ଆମ ଗାଁର ସନ୍ତିଆ ଧୋବା ଦେଖିଲା, ବାସୁଆ ବାରିକ ଦେଖିଲା, ଦେଖିଲେ ନର ଷଡ଼ଙ୍ଗୀ — ବାସୁ ପଣ୍ଡିତ । କଣ୍ଡ ମିଶ୍ର । ଅନାଦିଆଙ୍କ ଭୂତ ସଙ୍ଗେ ବାଗୁଡ଼ି ଖେଳିଥିଲେ ରାତି ଅଧରେ, ଜହ୍ନ ଆଲୁଅରେ, ନଈବାଲିରେ । ମୁଁ କି ଦୋଷ କରିଛି ପ୍ରଭୋ ! ମୋତେ ଭୂତ ଦେଖାହେବ ନାହିଁ ? ଦଶବର୍ଷର, ବାଳକତ୍ୱ — ପନ୍ଦର ବର୍ଷର କୈଶୋର — ୩୦ ବର୍ଷର ଯୌବନ

Digitized by srujanika@gmail.com

ମୋର ବ୍ୟର୍ଥ ହେଲ ପିନା ! ! ସମସ୍ତେ କହିଲେ ଭୂତକଥା, ମୁଁ କେବଳ ଆଜଯାଏ ଶୁଣିଲି । ମୁଁ ହେଲେ କାହାକୁ ଶୁଣାଇ ପାରଲ ନାହିଁ—ମୋ ପ୍ରତ୍ୟକ୍ଷ ଭୌତିକ ଅଭିଜ୍ଞତାର ଲୋମହର୍ଷଣ କାହାଣୀ । ୧୯୫୧ ମସିହା ଜୁଲାଇ ପନ୍ଦରତାରିଖ ଯାଏ ହୃଦୁ ଭିତରେ ଗୁମୁରି ମରୁଥିଲା ଏହି ବ୍ୟର୍ଥତାର କରୁଣ ଦୀର୍ଘଶ୍ୱାସ । ଅବଶେଷରେ ଆସିଲା ସେହି ମହେନ୍ଦ୍ର ବେଳା । ସେହି ଉପ୍ସାନଳ ଗରମଜଳ ନାଟକୀୟ ବେମଥୁସଜାତ ଆଶଙ୍କା ଉଦବେଗଶୀଳ ଦ୍ରୁତ ହୃତ ସ୍ପନ୍ଦନମୟ ଚମତ୍କାର ସ୍ଵର୍ଣ୍ଣ ମୁହୂର୍ତ୍ତ ଟି । କିନ୍ତୁ ଅତର୍କିତ ଭାବରେ ହଠାତ୍ ନୁହେଁ । ଧୀରେ ସୁସ୍ଥ-ଚିତ୍ତ ରଙ୍ଗମଞ୍ଚରେ ଦୃଶ୍ୟର ପରଦା ପରେ, ପରଦା ଖୋଲି ଓ ପଡ଼ଦା ପକାଇ ନାନାଦି ଉତ୍ଥାନ ପତନ ଭିତରେ ବଞ୍ଚିବା ନେନୁସରଣ କରି ମୋର ଭୌତିକ ଅଭିଜ୍ଞତାର ଶେଷ ଓ ପ ହେଇଗଲା । ନାଟକ ସମାପ୍ତି ତ, କ୍ଷଣିକ ଅନ୍ଧକାର ପରେ ଜଳିଉଠିଲା ଚନ୍ଦ୍ରା—ପ୍ରେକ୍ଷାଗୃହର ଉଜ୍ଜ୍ୱଳ ଆଲୋକ । ବାପ୍—ସେ ଆଲୋକ ଏବେ ବି ଜଳୁଛି…………

ଭୂତ ଦେଖାଦେଲା ୧୯୫୧ ମସିହା ଜୁଲାଇ ୧୫ ତାରିଖ ଆଷାଢ଼ସ୍ୟ ଏକାଦଶ ଦିବସେ । ସାନଭାଇର ବ୍ରତଘର ଲାଗି ଛୁଟି ନେଇ ଗ୍ରାମକୁ ଯାଇଥାଏ । ଆକାଶ ମେଘାଚ୍ଛନ୍ନ, ଚାରିଦିନ ଧରି ଅବିଶ୍ରାନ୍ତ ବୃଷ୍ଟି-ଧାରା କୃଷିକ୍ଷେତ୍ରକୁ ଦେଉଛି ଜଳ ପ୍ରାଚୁର୍ଯ୍ୟ—ରାଜପଥକୁ କରୁଛି କର୍ଦ୍ଦମାକ୍ତ । ଦୁଇଦିନ ହେଲା ବର୍ଷା ଥମିଛି; ମାତ୍ର ଆକାଶକୁ ଆଚ୍ଛନ୍ନ କରି ଘନକୃଷ୍ଣ ମେଘମାଳା ଗମ୍ଭୀର ହୋଇ ପୃଥିବୀକୁ ଚାହିଁ ରହି ଦେଖୁଛି—ଚାରିଦିନ ଧରି ଅଜସ୍ର ବୃଷ୍ଟି—ଜଳପ୍ଲାବନର ପ୍ରାଚୁର୍ଯ୍ୟରେ ନିଦାଘ-ତାପିତ ତୃଷାର୍ତ୍ତ ପୃଥିବୀର ଉଲ୍ଲସିତ ସନ୍ତୋଷର ଆର୍ଦ୍ର ପ୍ରତିଚ୍ଛବି । ବହୁକାଳ ଧରି ଅପେକ୍ଷିତ ଦୂର ଦେଶର ବନ୍ଦୀ ସ୍ୱାମୀଟିକୁ ହଠାତ୍ ଗୃହ ମଧ୍ୟରେ ଉପସ୍ଥିତ ଦେଖି ବାଞ୍ଛିତ--କାତର ବେଦନାକ୍ଲିଷ୍ଟ ଶୀର୍ଣ୍ଣତନୁ ଗୃହିଣୀଟି ଯେପରି ଉଲ୍ଲାସ ଚପଳ ଓ ଆବେଗଚଞ୍ଚଳ ହୋଇ କିଂକର୍ତ୍ତବ୍ୟ-ବିମୂଢ଼ ଭାବରେ ଖଳ ଖଳ ହୋଇ ଏଘରୁ ସେଘରକୁ, ସେଘରୁ ଏଘରକୁ ଉଦ୍ଦେଶ୍ୟ-ହୀନ ଧାଉଁଥାଏ—ସେହିପରି କୃଷି କ୍ଷେତ୍ରର ହିଡ଼ ତଳେ ତଳେ କଳ କଳ ହୋଇ ଝରଝର ଶବ୍ଦରେ ଶୀର୍ଣ୍ଣ ଜଳଧାରା ବହି ଚାଲିଛନ୍ତି, ଚତୁର୍ଦ୍ଦିଗରେ

Digitized by srujanika@gmail.com

ଅସଂଖ୍ୟ ଭେକ ଡାହୁକ ଓ କେକାରବରେ ଧରଣୀ ନିବେଦନ କରୁଛି—ଆହୁର ଦଅ—ହେ ଦାମ ପ୍ରବର ଇନ୍ଦ୍ରବାହନ ଜଳଦ ! ଆହୁର ଜଳଦାନ କର ।

ଦିନରେ ଖେଚୁଡ଼ି ଆଉ ମାଉଁସ ତରକାରୀ ଖାଇ ମୁଁ କିନ୍ତୁ ଆରାମରେ ଦିବାନିଦ୍ରା ଉପଭୋଗ କରିବାକୁ ଖଟ ଉପରେ ଚଢ଼ିଗଲି । ସୁନ୍ଦର ନିଦ ହୋଇଗଲା—ହଠାତ୍ କାହାର ସଜୋର କରାଘାତରେ ଓ କର୍କଶ ଧ୍ୱନିରେ ନିଦ ଭାଙ୍ଗିଗଲା । ଚମକି ଗୁହିଁ ଦେଖେତ, ଭୂତ ନୁହେଁ—ମୋର ମାତୁଳ ପୁତ୍ର । ମାତ୍ର ଆଠମାସର ଜନ୍ମଗତ ବ୍ୟବଧାନରେ ଅକସ୍ମାତ ଜ୍ୟେଷ୍ଠଭ୍ରାତା ଡକ୍ଟର ଶ୍ରୀ ନରହରି ଆଗୃର୍ଯ୍ୟ । ପ୍ରକାଶ ଥାଉକି ମୋର ପିତାମହଙ୍କର ଅସ୍ପୃଶ୍ୟ କାରିତାଫଳରେ ଏବଂ ମୋର ପିତାଙ୍କର ଅତ୍ୟଧିକ ପିତୃଭକ୍ତି ହେତୁ ମୋର ମାମୁଁଘରଟି ଦୁର୍ଭାଗ୍ୟବଶତଃ ମୋ ନିଜ ଗ୍ରାମରେ, ମାତ୍ର ଷୋଳଟି ଘର ବ୍ୟବଧାନ । ଯାହାର ମାମୁଁଘର ନିଜ ଗ୍ରାମରେ ସେ ଜନ ହତଭାଗ୍ୟ । ମୁଁ ସେହି ଜନ ହତଭାଗ୍ୟତମ—ମାତୁଳ-ପୁତ୍ର ତା'ଠାରୁ ମାତ୍ର ଆଠମାସ ବଡ଼ ଓ ଏମ୍.ବି.ବି.ଏସ୍. ଡାକ୍ତର । ବୟସରେ ମାତ୍ର ଏକ ବର୍ଷାଧିକ ଜ୍ୟେଷ୍ଠଭ୍ରାତାଙ୍କର ଚରଣ ସେବା କରିବାକୁ ଏ ଅଧମର ଆପତ୍ତି ନାହିଁ । ମାତ୍ର ଆଠମାସର ବୟସାଧିକ୍ୟଜନିତ ମାତୁଳପୁତ୍ର ଜ୍ୟେଷ୍ଠଭ୍ରାତାର କାଣ୍ଡଜ୍ଞାନହୀନ କଠୋର ସ୍ୱାର୍ଥପର ଆଦେଶ ଅନୁଜ୍ଞା ମଥାନତ କରି ପାଳନ କରିବାକୁ ତ୍ରିଂଶବର୍ଷ ବୟସର ବୟସ୍କ—ବହୁରବନ୍ତ ସହୃଦୟ ସାମାଜିକ ପାଣ୍ଡିତ୍ୟ ଅଧ୍ୟାପକ କନିଷ୍ଠଭ୍ରାତାକୁ ଅତି କଠିନ ସାଧନା କରିବାକୁ ପଡ଼େ । ଏ କଥା ଅନୁଭବୀ ନହେଲେ ବୁଝିହେବ ନାହିଁ । ଡାକ୍ତରଙ୍କୁ ଭୟ କରିବାର କାରଣ ହେଉଛି—ଏ ଜଗତରେ ସମସ୍ତେ ଡାକ୍ତର ହୋଇ ପାରିବେ ନାହିଁ, ମାତ୍ର ରୋଗୀ ହେବା ବଡ଼ ସହଜ ଓ କିଏ ଭଲ ରୋଗୀ ନୁହେଁ ? ତେଣୁ ଜୀବନରେ କେତେ କାଣ୍ଡଜ୍ଞାନହୀନ ସ୍ୱାର୍ଥସର୍ବସ୍ୱ ଡାକ୍ତରଙ୍କ ପାଖେ ହାତଯୋଡ଼ି ଠିଆହୋଇ ହାଁ—ଜୀ ହାଁ—ଜୀ କରିବାକୁ ନପଡ଼ୁଛି ! ଆଉ ଏତ ସହଜେ ମାତୁଳ-ପୁତ୍ର ଜ୍ୟେଷ୍ଠଭ୍ରାତା ଡାକ୍ତର ଶ୍ରୀ ନରହରି ଆଗୃର୍ଯ୍ୟ ଏମ୍.ବି.ବି.ଏସ୍. ।

Digitized by srujanika@gmail.com

ହେ ଉଠ୍-ଉଠ୍ ! ଗଧଙ୍କ ଭଳି ଶୋଇଛୁ କ'ଣ ଗୋଟେରେ ? ଉଠ୍‌ରେ—ହେ ! ଓଃ ବଡ଼ ବୋଧ !

ମୁଁ ଚମକି ପଡ଼ିଲି । କ'ଣ ହେବ ? କ'ଣ ହେଲା ? ଟୁନା ଦେହ କିପରି ଅଛି ? ( ଟୁନା ମୋର ଭଉଣୀଙ୍କର ସହୋଦର ନନ୍ଦୋଇ ପୁତ୍ର ) ଇନ୍ଦ୍ରମଣି କଟକରୁ ଫେରିଲେଣି ତ ଔଷଧ ନେଇ ?

ଆରେ ନାହିଁ, ସେଇତ ପ୍ରଧାନ ଅସୁବିଧା । ଟୁନାକୁ ବର୍ତ୍ତମାନ ସୁଦ୍ଧା ଜର ଅଛି—୧୦୦ ଡିଗ୍ରୀ ଉତ୍ତାପ । ଦଶମାସର ପିଲା, ଇନ୍ଦ୍ରମଣିଟା କେଡ଼େ କାଣ୍ଡଜ୍ଞାନହୀନ ଦେଖିଲ ! ମାଟ୍ରିକ୍ ଟପିଲାଣି । ଏଗୁଡ଼ାକ—ଅଥଚ ସକାଳୁ ଗଲାଣି କଟକ ଔଷଧ ଲାଗି, ବସ୍‌ରେ ଆସିଥିଲେ, ଆସିଥାଆନ୍ତାତ ? ଇନ୍ଦ୍ରମଣି ମୋର ସହୋଦର ଭାଇ । ମାତୁଳପୁତ୍ର ନରୁ ଭାଇନା ତାକୁ ମଧ୍ୟ ତାଙ୍କ ସ୍ୱାର୍ଥରେ କଟକ ପଠାଇଛନ୍ତି । ତା' ଉପରେ ଏ କଡ଼ା ମନ୍ତବ୍ୟ ଶୁଣି ମୁଁ ପ୍ରତିବାଦ କଲି—ନା, ନା, ତାର ଦୋଷ କଣ ? ବର୍ଷା ଦିନିଆ କଚ୍ଚା ରାସ୍ତା । ବସ୍‌ରେ ଏବେ କୋଉ ଟାଇମ୍ ଠିକ ଅଛି ? ପ୍ରାଇଭେଟ୍ ବସ୍ । ସେ ପୁଣି ଆସିବ ଫତେଗଡ଼ ବଜାର ଯାଏ । ସେଠୁ ଦଶମାଇଲ୍ ରାସ୍ତା, ପୁଣି କାଦୁଅରେ ଚାଲି ଚାଲି ଆସିବାକୁ ପଡ଼ିବ । ପିଲାଲୋକ, ଏଠି ହୁଏତ ସନ୍ଧ୍ୟା ବେଳକୁ ପହଞ୍ଚିପାରେ । ବର୍ତ୍ତମାନ କେଇଟା ବାଜିଲାଣି ?

ସନ୍ଧ୍ୟା ? ସନ୍ଧ୍ୟା ଆଉ କେତେ ବାକି ଅଛି ? ଏଇତ ଘଡ଼ିରେ ପାଞ୍ଚଟା ବାଜିଲାଣି । ସେ ରସ୍କେଲ ଆଜି ଆସିବ ନାହିଁ କେବେ । ନିଶ୍ଚେ କଟକରେ ରହିଛି । ସିନେମା ଦେଖିବ ରାତିରେ । ସକାଳୁ ଆସିବ । ଆଜିକାଲି ଏ ଟୋକା ଗୁଡ଼ାକ ସିନେମା, ସିନେମା ବୋଲି କ'ଣ ହେଉଛନ୍ତି ?

ମୁଁ କହିଲି, ନା, ନା—ସେ ସେପରି ପିଲା ନୁହେଁ । ହୁଏତ ଆସିଛି, ମାତ୍ର ଫତେଗଡ଼ ମଠର ଷ୍ଟାଣ୍ଡରେ ରହି ଯାଇଛି । କେହି ସାଙ୍ଗ ପାଇନି । ବର୍ଷାଦିନ । ଦଶମାଇଲ ବାଟ ଚାଲିକରି ଆସିବାକୁ ପଡ଼ିବ । ରାତି ହୋଇଯିବ ଭାବି ଫତେଗଡ଼ ମଠର ଷ୍ଟାଣ୍ଡରେ ଅଟକି ଯାଇଛି । କାଲି

Digitized by srujanika@gmail.com

ସକାଳେ ଆସି ପହଞ୍ଚିବ । କିନ୍ତୁ ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? ଟଙ୍କାକୁ ତ ମୋତେ ୧୦୦ ଡିଗ୍ରୀ ଜର । ଏ ତ ବାଇ ଫିବର ନୁହେଁ !

ଆରେ ତୁ ବୁଝିବୁ କେଉଁଠୁ ? ତୁ ତ ବାପା ହୋଇନାହୁଁ; ବୁଝିବୁ କେଉଁଠୁ ପିଲ୍ଲାଙ୍କର ବ୍ୟାକୁଳତା ? ନା'ପରେ ତୋର ଚେଞ୍ଜ ମାତ୍ରରେ ଓ ପିଲାଙ୍କ ଶରୀରତନ୍ତ୍ର ଉପରେ କ'ଣ ଜ୍ଞାନ ଅଛି କହିଲୁ ? ତୋର ତ କବିତା ଗଳ୍ପାଦି ଆଜେ ବାଜେ ଜିନିଷ ଲେଖାଇ ଦିନ ଗଲା !

ମୁଁ ଚୁପ୍ ରହିଲି । ଠିକ୍ତ କଥା, ମୁଁ ତ ପୁଅ ବାପା ହୋଇନାହିଁ । ବାତ୍ସଲ୍ୟ ବ୍ୟାକୁଳତା କାହୁଁ ବୁଝିବ ? ଶିଶୁ ଶରୀରତନ୍ତ୍ର ଓ ଔଷଧ ସମ୍ବନ୍ଧୀୟ ଜ୍ଞାନ ଅଜ୍ଞାନ କଥା ମିଛ । ସବୁର ମୂଳ ଏଇ ନବଲବ୍ଧ ପୈତୃକ ବାତ୍ସଲ୍ୟ ଉଦ୍‌ବେଗଶୀଳତା । ସ୍ୱାର୍ଥକେନ୍ଦ୍ରିକ, ଅର୍ଥକେନ୍ଦ୍ରିକ ମାତୁଳପୁତ୍ର ଜ୍ୟେଷ୍ଠଭ୍ରାତା ନରଭାଇନା ଡାକ୍ତରଙ୍କର ବ ଏକା ମୋହ ଏକା ମାୟା । ଡାକ୍ତରେପି ମତ୍ତ ଭ୍ରମ । ବୋଧେ ବେଶି ମତିଭ୍ରମ !

ମୁଁ କରୁଣ ହୋଇ କହିଲି, ତା ହେଲେ ବର୍ତ୍ତମାନ ଆଉ କ'ଣ କରିବା ? ଆତାତତଃ ଆଉ ତ କିଛି......

ଚାଲ ଯିବା ଫତେଗଡ଼ ବଜାର ମଟରଷ୍ଟାଣ୍ଡ ପାଖ । ଦେଖିବା ଯଦି ଇନ୍ଦୁମଣି ଆସି ସେଠି ଅପେକ୍ଷା କରିଥାଏ ସାଙ୍ଗ ପାଇବାକୁ, ତେବେ ତାକୁ ନେଇ ଆସିବା ସାଙ୍ଗରେ ।

ମୋର ହଲକ ଶୁଖିଗଲା । ପିତୃ-ଶ୍ୟାଳକଙ୍କର ସ୍ୱପତ୍ନୀ ଗର୍ଭଜାତ ଅଷ୍ଟମାସ ବୟୋଧିକ ଜ୍ୟେଷ୍ଠଭ୍ରାତା ଡାକ୍ତର ନରହରି ଭାଇନାଙ୍କର ସ୍ୱାର୍ଥକେନ୍ଦ୍ରିକ କାଣ୍ଡଜ୍ଞାନହୀନ ବାତ୍ସଲ୍ୟ-ମୋହାବେଗ ପ୍ରସୂତ ଆଦେଶ । ଏ ଆଦେଶ ଦୈବାଦେଶ । ଅଲଙ୍ଘନୀୟ । ଶିରୋଧାର୍ଯ୍ୟ । ତଥାପି କାତର କଣ୍ଠରେ ହାତଯୋଡ଼ି କହିଲି—

ପୂଜ୍ୟପାଦ ଭ୍ରାତୃଦେବ ! କ'ଣ ବର୍ତ୍ତମାନ ?

Digitized by srujanika@gmail.com

ହଁ—ହଁ, ଜଷ୍ଟ ନାଓ—

ଅସମ୍ଭବ କଥା ତୁମେ କହୁଚ ଭାଇନା । ବର୍ତ୍ତମାନ ସନ୍ଧ୍ୟା ହୋଇ ଆସିଲାଣି । ଅବଶ୍ୟ ଚନ୍ଦ୍ରପକ୍ଷ ତିଥି, ଏକାଦଶୀ । ଏଗାର ଲଙ୍କ ଜହ୍ନ; କିନ୍ତୁ ଆକାଶକୁ ଦେଖୁନ୍ତ ? ମେଘ ଦୁଇଦିନ ଧରି ଥମ୍ବି କରି ରହିଛି । ନିଶ୍ଚୟ ଆଜ ବର୍ଷା ହେବ ରାତିରେ । ଦଶମାଇଲ ରାସ୍ତା ! କାଦୁଅ । ଖମଣା । ଖାଲ । ବର୍ତ୍ତମାନ ଗଲେ ପହଞ୍ଚିବା ବୋଧେ ରାତି—ଏଗାରଟା ବେଳକୁ । ଲାଭ କ'ଣ ହେବ ଭାଇନା ?

ଲାଭରୁ ତୁ କ'ଣ ପାଇବୁ ? ଆମେ କ'ଣ ଚାଲି ଚାଲି ଯିବା ? ସାଇକେଲରେ ଯିବା । ଘଣ୍ଟାକ ଭିତରେ ଯିବା, ରାସ୍ତା କଡ଼େ କଡ଼େ ଘାସ ଉପରେ ସରସର ଗଡ଼ିଯିବ ସାଇକେଲ । କାଦୁଅରେ ପଶିବା କାହିଁକି ? ଇନ୍ଦୁମଣି ଯଦି ବସଷ୍ଟାଣ୍ଡରେ ଅପେକ୍ଷା କରିଥାଏ, ତେବେ ସଙ୍ଗେ ସଙ୍ଗେ ତାକୁ ପଛରେ ବସାଇ ଫେରି ଆସିବା । ବର୍ତ୍ତମାନ ସାଢ଼େ ପାଞ୍ଚଟା । ପହଞ୍ଚିବା ସେଠି ସାଢ଼େ ଛଅଟାରେ ପୁଣି ସେଠୁ ଫେରିଆସି ଏଠି ପହଞ୍ଚିବା ଖୁବ୍ ବେଶି ହେଲେ ରାତି ଆଠଟାରେ । ଜହ୍ନ ପଡ଼ୁଛି । ମୁଁ କହୁଛି, ଆଜି ରାତିରେ ମେଘ ହେବନି ?

ମୁଁ ପ୍ରତିବାଦ କଲି । କେମିତି ଜାଣିଲ ବର୍ଷା ହେବ ନାହିଁ ? ପାଞ୍ଜିରେ ଲେଖିଛି ଆଜି ଆଷାଢ଼ ଶୁକ୍ଳ ଏକାଦଶୀ ସମୟେ ବହୁ ଜଳ ବୃଷ୍ଟି । ତୁମେ କହୁଛ କ'ଣ ନା……

ଆରେ ଉଲୁ ! ଆର୍ଟସ ପଢ଼ି ତୋର ମୁଣ୍ଡ ଖରାପ ହୋଇ ଯାଇଛି । ତୁ ଆର୍ଟସରେ ହେଲୁ ମାଷ୍ଟର । କିନ୍ତୁ ସାଇନ୍ସରେ ରହିଗଲୁ ଚିରଦିନ ମୂର୍ଖଦାସ, ନହେଲେ ତୁ ପାଞ୍ଜିରେ ବିଶ୍ୱାସ କରନ୍ତୁ ?

ନା—ନା । କାଗଜରେ ବି ଆଜି ପାଣିପାଗ ଅଫିସ ଜଣାଇଛନ୍ତି ଯେ ଉପକୂଳ ଅଞ୍ଚଳରେ ସାମାନ୍ୟ ଭାବେ ଅବା ମଧ୍ୟମ ଧରଣର କିମ୍ବା ପ୍ରବଳ ବୃଷ୍ଟି ହେବାର ସମ୍ଭାବନା ରହିଛି । ଏହା ପ୍ରଚଣ୍ଡ ଘଡ଼ଘଡ଼ି ଯୁକ୍ତ ହୋଇପାରେ ବା ପୂର୍ବ ଶାନ୍ତ ନିସ୍ତବ୍ଧ ବୃଷ୍ଟିପାତ ହୋଇପାରେ ।

Digitized by srujanika@gmail.com

ଆରେ ଯା ! ପାଣିପାଗ ଅଫିସ କଥା ମୁଁ ଜାଣିନି ? ଆମ—ମେଡ଼ିକାଲ ପାଖରେଟି ପାଣିପାଗ ଅଫିସ୍‌ଟା ? ସବୁ ଫାଲତୁ !

ମୁଁ ଦେଖିଲି, କଳା ବୃଥା, ବିଜ୍ଞାନ ବ୍ୟର୍ଥ । ପାଞ୍ଜି କୁସଂସ୍କାର ପୂର୍ଣ୍ଣ । ପାଣିପାଗ ଅଫିସଟା ବି ଏକବାରେ ସଂସ୍କାର ବର୍ଜିତ । ନବଲବ୍ଧ—ନବାନୁଭୂତ—ଧୂସର ବାସ୍ତବାକାନ୍ତର—ସ୍ୱାର୍ଥକେନ୍ଦ୍ରିକ ଦାଣ୍ଡଜ୍ଞାନହୀନ ଡାକ୍ତରରେ ପୈତୃକ ହୃଦପୃଷ୍ଠା-ଇ-ଚରନ୍ତନ-ସତ୍ୟ । ଡାକ୍ତର ହେଲେ କ'ଣ ହେଲା, ଦ୍ରାପଞ୍ଜିକ ମୋହ ଆଗରେ ଡାକ୍ତରବି ମତିଭ୍ରମ । ଆଉ କିଛି ଉତ୍ତର ଆସନ୍ତି, ଯୁକ୍ତିତର୍କ ଚଳେ ନାହିଁ । ଅଗ୍ରଜ ଆଜ୍ଞାବହ ସୌମିତ୍ରୀ ରଥୀ ।

ହଉ ତେବେ ଚାଲ—ମୁଁ ଦ୍ୟୋଣ୍ଟା ପିନ୍ଧିନଏଁ ।

ପିନ୍ଧ୍ ଚଞ୍ଚଳ······

ଘଇନା । ଠିକେ ଗ୍ରହା ଖାଇଦେବା !

ଦୁତ୍—ସେ ଡେରି ହେବ ।

ଅଚ୍ଛା ଦି'ଖଣ୍ଡ ପାନ ତେବେ··· ···

ଆରେ ଥାଉ; ବାଟରେ ଦେଖିବା । ତୁ ଚାଲ, ଚଞ୍ଚଳ ଧର ସାଇକେଲ, ବାହାର, ବାହାର ଚଞ୍ଚଳ ।

ସାଇକେଲ ଧରିଲି ।

ଘଇନା । ଟର୍ଚ୍ଚଟିଏ ନବା ନାହିଁ ହାତରେ ?

ଆରେ ଯାଃ । ଟର୍ଚ୍ଚ ଖୋଜିବାକୁ ବେଳ ନାହିଁ । ଜହ୍ନରାତି—ଉଠ୍, ଜଲଦି ଉଠ ସାଇକେଲରେ·········

ଦୁହେଁଯାକ ସାଇକେଲରେ ଉଠିଲୁ । ସଡ଼କର କଡ଼େ କଡ଼େ ଯେଉଁ ହାମୁଆ ଶୁଖିଲ ଡିପବାସ୍ତା, ତାହାର ଉପରେ ସାଇକେଲ ଗଡ଼ାଇ ଚାଲିଲୁ ଆମେ—ଅଗିଲା ପିଛିଲା । ମୁଁ ଆଗରେ, ଅଗ୍ରଜ ପଛରେ । ଦୁଇ ତିନ ମାଇଲ ବାଟ ଚଲାପରେ ପ୍ରାପ୍ତ ରାତି ହୋଇଗଲା । ମେଘାବୃତ ଜହ୍ନରାତି ।

Digitized by srujanika@gmail.com

ମୋଟାମୋଟି ଭାବରେ ରାସ୍ତା ଦେଖାଯାଉଛି । କିନ୍ତୁ ରାସ୍ତାର ଖାଲ ଢିପ, ତେଲ ଡାମଣା ସ୍ପଷ୍ଟ ଜଣା ପଡ଼ୁନାହିଁ । ମଝିରେ ମଝିରେ ଧଡ଼ାସ୍‌କିନା ସାଇକେଲ ଗୋଟେ ଖାଲରେ ଖସି ପଡୁଛି; ପୁଣି ଉଠୁଛି । ମୋଟ ଉପରେ ପଡ଼ିଉଠି ଧାଇଁଛୁ । କ୍ରମେ କ୍ରମେ ରାତି ମଧ୍ୟ ହୋଇ ଉଠୁଛି । ଫତେଗଡ଼ ବଜାର ଆଉ ପ୍ରାୟ ବାଟ ତିନି ମାଇଲ ଅଛି । ହଠାତ୍ ପ୍ରବଳ ବେଗରେ ପବନ ସହ ବର୍ଷା ମାଡ଼ିଆସିଲା । ପ୍ରଥମେ ଟପ୍ ଟପ୍, ତାପରେ ଭଡ଼୍ ଭଡ଼୍ ଭଡ଼୍—ତା'ପରେ ଏକଦମ ବର୍ଷା କାଟିବାକୁ ଆରମ୍ଭ କଲା । ଉଃ ! କେତେ ବର୍ଷା ନହେଲା ! କାଦୁଅ ରାସ୍ତା ପୂରିଗଲା ପାଣି ଆଉ କାଦୁଅରେ । ବାଟମଧ୍ୟ ଆଉ ଭଲ ଦେଖାଯାଉ ନାହିଁ । ଯେପରି ବର୍ଷା ହେଉଛି ମନେ ହେଉନି ଏ ବର୍ଷା ଛାଡ଼ିବ । କ୍ୟାରିଅରରେ ଯୋଡାକୁ ଚାପି ଆମେ ଚାଲିଛୁ । ଦେହ ଓଦାରେ ଜୁଡ଼ୁବୁଡ଼ୁ । ଘଡ଼ଘଡ଼—ବିଜୁଳି—ସୁ ସୁ ପବନ । ରାସ୍ତା କଡ଼ର ଗଛଗୁଡ଼ାକ ମଡ଼ମଡ଼ ଭାଙ୍ଗୁଛନ୍ତି । ରାସ୍ତାର ଦୁଇ ପାଖରେ ଆଉ ଗାଁ-ଗଣ୍ଡା ଦିଶୁନି । ମାଇଲ ମାଇଲ ଗମ୍ଭୀର ବିଲ—ଆଖି ପାଉନାହିଁ । ରାସ୍ତାରେ ସାଇକେଲକୁ ଠେଲି ଠେଲି । କାଦୁଅ ଭିତରେ ସାଇକେଲ ଆଦୌ ଗଡ଼ୁନାହିଁ । ଅଣ୍ଟା ଲାଗି ଯାଉଛି । ଘଡ଼ଘଡ଼ ଶବ୍ଦରେ ଛାତି ଥରି ଉଠୁଛି । ଘନଘନ ଲଟା ବିଜୁଳି ଝଲସେଇ ଦେଉଛି ଆଖି । ଉଃ ! ଆଉ କେତେବାଟ ଅଛି ଫତେଗଡ଼ ବଜାର ? ଏ ରାସ୍ତା କ'ଣ ଆଉ ସରିବ ନାହିଁ ? ହଠାତ୍ ଦୂରରେ ଗୋଟାଏ ଆଲୁଅ ମିଞ୍ଜି ମିଞ୍ଜି ଦେଖାଗଲା ।

କିନ୍ତୁ ଆଲୁଅଟା ଶରଗୁଣିର ଆଲୁଅ ନୁହେଁ । ଗୋଟେ ଲଣ୍ଠନର ଆଲୁଅ । ମନରେ ଆଶାର ସଞ୍ଚାର ହେଲା । ବଜାର ବୋଧହୁଏ ଏଇ ହଣିଲାଣି । ସେହି ଆଲୁଅକୁ ଲକ୍ଷ୍ୟକରି ଆମେ ଧାଇଁଛୁ । ମାତ୍ର ଆଲୁଅଟା ସତେ କି ଦୂରକୁ ଘୁଞ୍ଚି ଯାଉଛି ! କାହିଁ ? ବଜାରର ଅନ୍ୟାନ୍ୟ ଆଲୁଅ ତ ନିଶ୍ଚୟ ଦେଖାଯାଆନ୍ତା । କିନ୍ତୁ ସେଇ ଗୋଟାଏ ମାତ୍ର ଆଲୁଅ ଯେ ଅଥଳ ସମୁଦ୍ର ଯାତ୍ରୀର ବନ୍ଦରର ଆଲୋକ ପରି ମିଞ୍ଜି ମିଞ୍ଜି ହୋଇ ପଥ ଦେଖାଉଛି ଓ ଆଶା ସଞ୍ଚାର କରୁଛି, ମାତ୍ର ଆଲୁଅଟା ପ୍ରକୃତରେ ଏତେ ଦୂରରେ ନଥିଲା । ଆମେ କେତେବେଳେ ଆସି ସେଇ ଆଲୁଅ ଆଗରେ

Digitized by srujanika@gmail.com

ପହଞ୍ଚିଗଲୁ । ଫତେଗଡ଼ ବଜାର । ଘଡ଼ିକୁ ଚାହିଁଲୁ । ରାତ ନଅଟା । ବର୍ଷା ଛାଡ଼ି ଆସିଲାଣି । ପ୍ରାୟ ଏକ ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଏ ମେଘ ବର୍ଷିଯାଇଛି । ବଜାରଟି ଛୋଟ । ୩ । ୪ଟି ଦୋକାନ । ସବୁ ଦୋକାନ ବନ୍ଦ ହୋଇଗଲାଣି । ଗୋଟିଏ ମାତ୍ର ଦୋକାନରେ ଜଳୁଛି ଆଲୁଅ । ବସ୍ ଆସିନାହିଁ । କିନ୍ତୁ ବେଶି ସମୟ ଅପେକ୍ଷା କରିନାହୁଁ — ସଙ୍ଗେ ସଙ୍ଗେ ଆସିଲା ବସ୍ । ଆମେ ଶ୍ରୀମାନ ଇନ୍ଦ୍ରମଣିଙ୍କର ତଲାସ କଲୁ ! ମାତ୍ର କଣ୍ଡକ୍ଟର, ଡ୍ରାଇଭର ଓ କ୍ଲିନରଙ୍କୁ ମିଶାଇ ମାତ୍ର ୫ ଜଣ ଥିଲେ ସେ ବସ୍‌ରେ । ଶ୍ରୀମାନ ଇନ୍ଦ୍ରମଣି ଆସିନାହାନ୍ତି ।

ହାୟ ! ସମୁଦ୍ର ମଧ୍ୟରେ ଏତେ କଷ୍ଟରେ ସେତୁବନ୍ଧ ବନ୍ଧା ହେଲା, ଲଙ୍କାଗଡ଼ରେ ପ୍ରବେଶ ହେଲା । ମାତ୍ର ସୀତା କାହାନ୍ତି ଲଙ୍କାରେ ?

ନର ଭାଇନା ଏକବାରେ ବିରକ୍ତ ହୋଇ ରାଗିଗଲେ ।

କେଡ଼େ କଦର୍ଯ୍ୟ ଟୋକାଟା ଦେଖିଲୁ ତ ? ଇଡ଼ିଅଟ୍‌ଟା ! ଆସିଲାନି କେମିତି ଏ ବସ୍‌ରେ ଭଲା ! ନିଶ୍ଚୟ ଯାଇ ସିନେମା ଦେଖୁଛି ଆଜି କଟକରେ । ଓଃ, ଏଗୁଡ଼ାକଙ୍କ ଉପରେ କିପରି ଯେ ନିର୍ଭର କରିବା ।

ଇନ୍ଦ୍ରମଣି ନ ଆସିବାରେ ମୁଁ ମଧ୍ୟ ଦୁଃଖିତ ହେଲି । ମାତ୍ର ବାତ୍ସଲ୍ୟପରାୟଣତା ଯୋଗୁଁ ନୁହେଁ ନିଶ୍ଚୟ । ଟୋକାଟା ଆଜି କେଉଁଠି ରହିଥିବ କଟକରେ ? ବର୍ଷା ଓ ତୋଫାନ ଯୋଗୁଁ ବସ୍ ଆସିବାରେ ଡେରିହେବା ଦେଖି ବୋଧହୁଏ ଆସିଲା ନାହିଁ । ଆସି ଆସି ଏବେ ଯାଏଁ ଆସି ଥାଆନ୍ତା ! ତା'ପରେ ଦଶମାଇଲ ବାଟ ରାତିରେ ଏକୁଟିଆ କିପରି ଯାଆନ୍ତା ! ତେଣୁ ଆଜି ଗ୍ରାମରେ ପହଞ୍ଚିବାର ଆଶା ତ୍ୟାଗ କରି ଫତେଗଡ଼ ବଜାରରେ ରାତିଯାପନର କଷ୍ଟକୁ ଏଡ଼ିବାଲାଗି ବୋଧହୁଏ ରହିଯାଇଛି । ସକାଳ ବସ୍‌ରେ ଆସିବ । ମାତ୍ର ଓଃ ! କେମିତି ଛୋଟ ପିଲାଟା ରହିଥିବ ଆଜି ରାତିରେ କଟକରେ ? ଇନ୍ଦ୍ରମଣି ମୋର ସହୋଦର ସାନଭାଇ । ମୋଠାରେ ସନ୍ତାନ ବାତ୍ସଲ୍ୟ ଜାଗ୍ରତ ହୋଇ ନାହିଁ, ମାତ୍ର ସାନଭାଇ—ବାତ୍ସଲ୍ୟ ଏଇ ପୁତ୍ର ବାତ୍ସଲ୍ୟକାତର ମାତୁଳ ପୁତ୍ର ଡ଼ାକ୍ତରଠାରୁ ନିଶ୍ଚୟ ବେଶି । କିନ୍ତୁ କଣ

Digitized by srujanika@gmail.com

ଆଜି କହିବ ? ପରିଶ୍ରମ—କ୍ଲାନ୍ତ ମୋତେ ବି ପ୍ରବଳ କ୍ଷୁଧା ହେଲାଣି । ଦେହରେ ଓଦା ପୋଷାକ । ଶୀତରେ ଦେହ ଥରୁଛି । ଗରମ ଚାହା ଦରକାର । ସିଗାରେଟ୍ ଦରକାର । ଦୁଇଖିଲି କଡ଼ାଗୁଣ୍ଡି ପାନ । ଆଗ କ୍ଷୁଧା ନିବାରଣ—ଉତ୍ତାପ ଧାରଣ; ତା'ପରେ ଯାଇ ଯୋଉକଥା । ମୁଁ କହିଲି—

ହଉ ଭାଇନା ! ଆସିଲ ଆଗ ଏ ଦୋକାନରୁ କିଛି ଜଳଖିଆ ଖାଇବା । ଚା, ସିଗାରେଟ ଓ ପାନ ନହେଲେ ଅବସ୍ଥା ସାଙ୍ଘାତିକ ।

ଦୁହେଁଯାକ ଦୋକାନକୁ ଗଲୁ ।
ହଇ ହୋ ମାଲିକେ ! କ'ଣ ଜଳଖିଆ ଅଛି ?
ଚୂଡ଼ା ଅଛି ବାବୁ ! ଗୁଡ଼ ବି ଅଛି ।
ଆଉ କିଛି ନାହିଁ ?
ଚୂଡ଼ା ଗୁଡ଼ଠାରୁ ଆଉବଳି ଜିନିଷ ଅଛି ବାବୁ ?

ମୁଁ ନୈରାଶ୍ୟ ଓ କ୍ରୋଧରେ ବ୍ୟସ୍ତହୋଇ ପଡ଼ିଥିଲି । ଇଚ୍ଛା ହେଉଥିଲା ଆମକୁ ଚୂଡ଼ାଗୁଡ଼ ବିକିବ ସିନା, ମୁଣ୍ଡ କେବେ ବିକିବ ନାହିଁ ।

କହିବା ବାହୁଲ୍ୟ, ଜଳ--ଭେଦନ କାତର କଠିନ—ହୃଦୟ ଚିପିଟକ ଓ କଳା—ପିମ୍ପୁଡ଼ିମାଳିନୀ ତରଳ ହୃଦୟା ଗୁଡ଼ର ସଂଯୋଗ ବିରୁଦ୍ଧରେ ଦନ୍ତ ଜିହ୍ୱା ଓ ଗଳଦେଶ ପ୍ରଭୃତି ଅବୟବମାନେ ବିଦ୍ରୋହ କଲେ । ଫୋପାଡ଼ିଦେଇ କହିଲି—ଚାହା ଅଛିକି ହୋ ?

ଚାହା ଏଠି ଏତେବେଳେ, କିଏ ଖାଏ ବାବୁ ? ଚାହା ଏଠି କାହୁଁ ମିଳିବ ? ତେବେ ପୁଡ଼ିଆ ଚାହା ଅଛି, ଦେବି ?

ମୁଁ କହିଲି—ମହାଜନେ ! ତୁମକୁ ଶୋଷ କଲାବେଳେ ତୁମକୁ ଗୋଟେ ପାଣିଲା ବେଲ ଧରାଇ ଦେଲେ ତୁମେ ପିଇବ ?

ନର ଭାଇନା ବିରକ୍ତ ହେଲେ । ଆଃ କଣ ଗୋଟେ ଯୁକ୍ତି କରୁଛୁ ଦୋକାନୀ ସାଙ୍ଗରେ ? ତୁ ଭାରି ଚାହାଖୋର ହୋଇଗଲୁଣି ।

Digitized by srujanika@gmail.com

ମୁଁ ତାଙ୍କ କଥା ନଶୁଣି ଦୋକାନୀକୁ କହିଲି, ଆଚ୍ଛା, ଖିଲିପାନ ମିଳିବ ? ନାଇଁ ବାବୁ । ଆମେ ଖିଲିପାନ ବିକୁନା । ତେବେ ପାନ, ଗୁଆ, ଗୁଣ୍ଡି, ଖଇର ସବୁ ଅଛି । ମାଟିକ ଚୂନଟା ନାଇଁ ।

ନୈରାଶ୍ୟର ଆଉ ସୀମା ଅଛିକି ? ଦେହରେ ଓଦାଲୁଗା ଲାଗି ଦେହଟା ବଡ଼ ଖରାପ ଲାଗୁଛି । ଶେଷ ଅନୁରୋଧଟି ଜଣାଇଲି ।

ଆଚ୍ଛା, ସିଗାରେଟ୍ ଅଛି ଭାଇ ?

ହଁ ବାବୁ ଅଛି—ସିଜର୍ ।

ଓହୋ ! ଈଶ୍ୱର ପ୍ରଧାନମନ୍ତ୍ରୀଙ୍କୁ ରକ୍ଷା କରନ୍ତୁ । ଗୋଟିଏ ପ୍ୟାକେଟ ସିଗାରେଟ୍ ଓ ଡିଆସିଲି କଣି ଲଗ୍ ଲଗ୍ ଦୁଇଟା ସିଗାରେଟ ଲଗାଇ ଧୂଆଁ ଗିଳିଲି । ଖଣ୍ଡିଏ ସିଗାରେଟ୍ ବଢ଼ାଇଲି ମାଲୁନ ପୃଷ୍ଟଙ୍କୁ—

ଖଣ୍ଡେ ଖାଅ ଭାଇନା ।

ନା ରେ—ମୁଁ ସେ ଧୂଆଁ ଗୁଡ଼ାକ ଗିଳେନାହିଁ !

ମୋର ଇଚ୍ଛା ହେଉଥିଲା କହିଦେବି—ଧୂଆଁ କାହିଁକି ଗିଳିବ ? ତେବେ ଯେ କଆଁ ଗିଳା, ନହେଲେ ଡାକ୍ତର ହୋଇଥାନ୍ତ ? ମାତ୍ର ସେ- କଥା ନକହି ବର୍ତ୍ତମାନ କିଂକର୍ତ୍ତବ୍ୟ କଥା ପଚାରିଲି ।

ବର୍ତ୍ତମାନ ଆଉ କଣ କରିବା ଭାଇନା ?

କ'ଣ ଆଉ କରିବା ? ଚାଲ ଫେରିଯିବା ଚଞ୍ଚଳ । ପିଲାଟାକୁ ତେଣେ ୧୦୦ ଡିଗ୍ରୀ ଜର । ଇଡଅଟ୍‌ଟା ତ ଆସିଲା ନାହିଁ । ଆମେ ଯଦି ଚଞ୍ଚଳ ଘରେ ନ ପହଞ୍ଚିବା—ତୋ ଭାଉଜ ବଡ଼ ବ୍ୟସ୍ତ ହୋଇ ପଡ଼ିବ ।

ବଡ଼ କ୍ଳାନ୍ତ ଲାଗୁଥାଏ । ପୋଷାକ ପତ୍ର ଓଦା । ସନ୍ତସନ୍ତିଆ ଲାଗୁଛି ଦେହଟା । ଏଠି ମଧ୍ୟ ରହିବା ଆଦୌ ସମ୍ଭବ ନୁହେଁ । ଓଦା ଲୁଗା ବଦଳିବାକୁ ଏଠାରେ ସୁବିଧା ନାହିଁ । ଏଠି ରହି ହେବନାହିଁ ଏପରିଭାବେ ନଷ୍ଟପ୍ରି । ମାତ୍ର ଆଉ କ'ଣ ବର୍ତ୍ତମାନ ଫେରିଯାଇ ହେବ ଦଶମାଇଲ

Digitized by srujanika@gmail.com

କାଦୁଅ ରାସ୍ତାରେ ସାଇକେଲ ଠେଲି ଠେଲି ? ଓଃ—ଭଗବାନ୍ ! ଏ ଯେ ନ ଯଯୌ ନ ତସ୍ଥୌ ଅବସ୍ଥା । କାଳିଦାସ ବର୍ଣ୍ଣିତ ହିମାଳୟ ନନ୍ଦିନୀ ପାର୍ବତୀଙ୍କର ଏଇ ନ ଯଯୌ ନ ତସ୍ଥୌ ଅବସ୍ଥାର ଆଗରେ ଥିଲେ ପାର୍ବତୀପ୍ରିୟ ଦେବ ଦେବ ମହାଦେବ । ନର ଭଇନାଙ୍କ ଆଗରେ ରହିଛନ୍ତି — ତାଙ୍କର ଦାମ୍ପତ୍ୟ ଓ ବାତ୍ସଲ୍ୟ—ପ୍ରତିମା । ମାତ୍ର ମୋର କ'ଣ ଅଛି ? ଶୂନ୍ୟତା — ଅନ୍ଧକାର କାଦୁଅ—ଓଦା ପୋଷାକ—କ୍ଳାନ୍ତି—କ୍ଷୁଧା ଓ ବିରକ୍ତି । କିଛି ନ କହି ଚୁପ୍ ହୋଇ ଠିଆ ହେଲି । ଅଖି ଆଗରେ ଉଡ଼ିଗଲେ ଦୁଇଟା ଜୁନ୍ତୁ ଜୁଳିଆ ପୋକ । ବାତ୍ସଲ୍ୟ ମାଧୁର୍ଯ୍ୟମୟ ଓ ଦାମ୍ପତ୍ୟ ମୋହାନ୍ଧ ଡାକ୍ତର ନର ଭଇନା କହିଲେ—

କ'ଣ ଆଉ ଭାବୁଛୁ ? ଉଠ୍ ଚାଲ୍ ଧ ସାଇକେଲ । ରାତି ହୋଇ ଯାଉଛି । ତେଣେ ତୋ ଭାଉଜ ବଡ଼ ଉଦ୍‌ଗ୍ରୀବ ହୋଇ ବସିଥିବ । ପିଲାଟାକୁ ଜର ନା !

ମୁଁ କହିଲି, କିନ୍ତୁ ଭାଇନା ! ଧର ଯଦି ଆମେ ପୁଣି ଗ୍ରାମକୁ ଫେରିବା—ବର୍ତ୍ତମାନ ରାତି ହେଲାଣି ଦଶ, ଦଶ ମାଇଲ ବାଟ କାଦୁଅ ରାସ୍ତା ଚାଲି ଚାଲି ସାଇକେଲକୁ ଠେଲି ଠେଲି କାଦୁଅରେ—ଧର—ଆମେ ନମର ଜଣ ଶେଷକୁ ଘରେ ପହଞ୍ଚିଲେ । ସେତେବେଳକୁ କିନ୍ତୁ ରାତି ପାହିଥିବ । ଭାଉଜଙ୍କ ଉଦ୍‌ବେଗକୁ ତୁମେ କିପରି ଶାନ୍ତ କରିବ ? ସେ କଥା ନୁହେଁ । ଶହେ ଜ୍ୱରହାନ୍ତ— ଶିଶୁପୁତ୍ର ପାଖରେ ଗାଲରେ ହାତଦେଇ ବସି ଆଜି ତାଙ୍କୁ ଯେପରି ଭାବେ, ଅନିଦ୍ରାରେ ହେଉ ଉଦ୍‌ବେଗରେ ହେଉ ତୁମର ଆସିବା ପଥକୁ ଚାହିଁ ରାତି କଟାଇବାକୁ ହିଁ ପଡ଼ିବ । ତେଣୁ ତାଙ୍କ ଲାଗି ନୁହେଁ । ପୁଅଲାଗି ମଧ୍ୟ ନୁହେଁ । କେବଳ ଏଠି ରହିହେବ ନାହିଁ ବୋଲି ଆମକୁ ବର୍ତ୍ତମାନ ସଙ୍ଗେ ସଙ୍ଗେ ଗ୍ରାମକୁ ଫେରିଯିବାକୁ ହେବ, ଯାହା ପଛେ କଷ୍ଟ ହେଉ । କିନ୍ତୁ କଥା ହେଉଛି······ ······ଏତେ ରାତିରେ ଆମେ ଦୁହେଁ ମାତ୍ର ପାଞ୍ଚ ଛଅ ମାଇଲ ରାସ୍ତା କାଦୁଅରେ ସାଇକେଲ ଠେଲି ଠେଲି ନେଇ ଯିବାପରେ ଟେଣିକି ରାସ୍ତାର ଡାହାଣ କଡ଼େ କଡ଼େ ବରବର ବଣ ପଡ଼ିବ । ମଶାଣି ପଡ଼ିବ । ଦୁଇଜଣ ଅଛୁ । ତେଣୁ ଭୂତ

Digitized by srujanika@gmail.com

ଭୟ ହୁଏତ ନାହିଁ । ମାତ୍ର ବାଘଟା ବାହାରି ପାରେ । ତୁମେ ମୋର ମାମୁଁ ପୁଅ ବୋଲି ପ୍ରଭୁର ଜ୍ଞାନରେ ବାଘମାମୁଁ ତୁମକୁ ଅବା ଛାଡ଼ିଦେଇ ପାରେ । ତା'ଛଡ଼ା ତୁମ ଦେହରେ ଡାକ୍ତରର ବଳ, ମାତ୍ର ମୋତେ ସେ ଉପରୋଧ କରିବ କାହିଁକି ?

ନର ଭାଇନା ବିରକ୍ତ ହୋଇ କହିଲେ—ଏତେ ଗୁଡ଼ାଏ ବକ୍ତୃତା କରନା, ମୁଁ ଦେଖୁଛି, ତୁ ଏବେ ଠିକ ବେଶି ଫାଜିଲ ହୋଇ ଯାଉଛୁ । ବଡ଼ଭାଇ ସାଙ୍ଗେ ଏପରି ପରିହାସ ସାଜେନା, ବୁଝିଲୁ ?

ମୁଁ କହିଲି—ହେଲା ଏବେ, ମୁଁ ତୁମ ସଙ୍ଗେ ପରିହାସ କରୁଛି, ମାତ୍ର ବାଘ ସଙ୍ଗେ ମୁଁ କଦାଶ୍ଚନ ପରିହାସ କରୁନାହିଁ । ଆମେ ଦୁହେଁ ଏତେ ରାତିରେ ଏକା ଯିବାକୁ ଭୟ ଲାଗିବ ନାହିଁ ? ବାଘ ବାହାରିବା କ'ଣ ଅସମ୍ଭବ ?

ନର ଭାଇନା କହିଲେ, ବାଘ ବାହାରିବା ଅସମ୍ଭବ ନୁହେଁ, ମାତ୍ର ଆମର ଏ ବଣ ତ ସୁନ୍ଦରବନ ନୁହେଁ ଯେ ରଏଲ ବେଙ୍ଗଲ ଟାଇଗରଟାଏ ସସ୍କନା ବାହାରି ପଡ଼ିବ ! ଗଧିଆ, ହେଟା, ହୁଣ୍ଡା ବା ଖୁବ୍ ବେଶିହେଲେ ଗୋଟାଏ କଲରା ପତରିଆ ବାଘ ବାହାରିପାରେ । ଗୋଟେ କୁକୁର ଭଳିଆ । ଆମେ ଦୁଇଜଣ ଅଛୁ । ଏଠି ମଣିଷଖିଆ ବାଘ କାହାନ୍ତି ?

ମୁଁ କହିଲି—ଆମକୁ ଖାଇସାରିଲା ପରେ ସେଇ ବ୍ୟାଘ୍ରଟି ଯେ ସେହି ନାମରେ ହିଁ ସ୍ୱନାମଧନ୍ୟ ହେବ—ଏହି ସୂକ୍ଷ୍ମ କଥାଟା ବୁଝି ପାରୁନ ?

ଆରେ ଗୁଲ—ଫାଲ୍‌ତୁ କଥା । ଧର ସାଇକେଲ—ଉଠ୍ । ଏହିପରି ଭୟଙ୍କର ଏ ଜାତଟା ଚିରଦିନ ପଛରେ ପଡ଼ିଯାଇଛି ।

ରାବଣ ମୁହଁରେ ରାମନାମ । ବ୍ୟକ୍ତି ମୁଖରେ ଜାତିର ଧ୍ୱନି—ଆଉ ଏ ରକ୍ତ ସମ୍ଭାଳିବ ନାହିଁ । ଧରିଲି ସାଇକେଲ । ଚଳୁ, ଜୟ ମା' କଟକ ଚଣ୍ଡୀ !

Digitized by srujanika@gmail.com

......ସାଇକେଲ ଠେଲି ଠେଲି ଛଅମାଇଲ ରାସ୍ତା ଅତିକ୍ରମ କଲୁ । ପାଠକେ ! ଏ ଛଅ ମାଇଲ ରାସ୍ତାକୁ ଗୋଟିଏ ଧାଡ଼ିରେ ଅତିକ୍ରମ କରିନାହୁଁ । ଯେଉଁ କଷ୍ଟରେ ଏ ଛଅ ମାଇଲ ରାସ୍ତା କଟିଛୁ ସେ କଥା ଏ ମନ ଜାଣେ, ଏ ବ୍ରହ୍ମ ଜାଣେ । ମାତ୍ର ଆଉ ବୃତ୍ତିମାଇଲ ରାସ୍ତାର ଅଭିଜ୍ଞତା ବର୍ଣ୍ଣନା ଆଗରେ ଥିବାରୁ ସେଥିରୁ କ୍ଷାନ୍ତ ହେଲି । ଛଅ ମାଇଲ ଗଲାପରେ ରାତି ହେଲାଣି ଦୁଇଟା । ଚନ୍ଦ୍ର ପ୍ରାୟ ଅସ୍ତ ହୋଇଗଲାଣି । ଆକାଶ ତଥାପି ମେଘାଚ୍ଛନ୍ନ । ସାଇକେଲକୁ କାଦୁଅରେ ଠେଲି ଠେଲି ଦେହରୁ ବଳ ହଟିଲାଣି । ରାସ୍ତା ଦିଶୁନାହିଁ । ଖାଲ, ଢିପ, କାଦୁଅ । ସାଇକେଲର ମଡ଼ଗାର୍ଡ଼ ଭିତରେ ମେଞ୍ଚା ମେଞ୍ଚା କାଦୁଅ ପଶିଯାଇ ସାଇକେଲ ଆଦୌ ଗଡ଼ୁନାହିଁ । ଅଗତ୍ୟା ସାଇକେଲକୁ ରାସ୍ତା କଡ଼କୁ ଟେକିନେଇ ନୟନ ଯୋଡ଼ିର ପାଣିରେ ଚକା ଓ ମଡ଼ଗାର୍ଡ଼କୁ ଧୋଇବାକୁ ପଡ଼ୁଥାଏ । କାଦୁଅ ଧୋଇସାରି ପୁଣି କିଛି ବାଟ ସାଇକେଲ ଠେଲି ଠେଲି ଚାଲିଛୁ । ଗୋଟାଏ ହାତୀକୁ ତାର ଇଚ୍ଛା ବିରୁଦ୍ଧରେ ନେବା ବରଂ ସହଜ, ଗୋଟାଏ ରାସ୍ତା ରୋଲରକୁ ଠେଲିବା ସହଜ । କଟକ—ନିଆଳୀ ରାସ୍ତାରେ ଥରେ ଥରେ ହାଫ୍‌ଟନ୍ ବସକୁ ବାଲିରେ ଠେଲି ଠେଲି ନେଇଛୁ—କଷ୍ଟ ହୋଇନାହିଁ । ମାତ୍ର ଅନ୍ଧାର ରାତିରେ, କାଦୁଅ ଭିତରେ ଖୋଲିଲ ପେଟରେ ସାଇକେଲ ଠେଲି ? ତିରିଶ ବର୍ଷର ପାଳକ ଯୌବନ ଛଡ଼ା କେହି ତାହା କଳ୍ପନା କରିବାକୁ ମଧ୍ୟ ସାହସ କରିବେ ନାହିଁ । ଠେଲି ଠେଲି ଅଣ୍ଟା ବସିଗଲାଣି । ଦେହରେ ଆଉ ପ୍ରାଣ ନାହିଁ । ମାତ୍ର କ'ଣ ଆଉ କରାଯିବ ? ଏ ଅନ୍ଧାର ବର୍ଷା ରାତିରେ, ନିର୍ଛାଟିଆ କାଦୁଅ ରାସ୍ତାରେ ଠିଆହୋଇ କ'ଣ ଅକ୍‌କା ମଧ୍ୟ ମାରିହେବ ? ଚକାଡୋଳାଙ୍କୁ ଡାକ ହେବ ? ଓଃ ! ନା ଆଉ ହେବ ନାହିଁ । ଅଣ୍ଟାରେ ଆଉ ବଳ ନାହିଁ । ଏ ଜୀବନ ପଛେ ଏଇଠି ବାହାରି ଯାଉ ।

ନରି ଭାଇନା ଅବଶ୍ୟ ସାଇକେଲ ଠେଲୁଛନ୍ତି । ମାତ୍ର ତାଙ୍କୁ ଟାଣୁଛନ୍ତି ଦୁଇଜଣ—ଦଶମାସର ପୁତ୍ର ଆଉ ଦେଢ଼ ବର୍ଷୋବଧି ପ୍ରଣୟିନୀ ତରୁଣୀ ଭାର୍ଯ୍ୟା । ତା ଛଡ଼ା ଡାକ୍ତରର ହାଡ଼ ଟଙ୍କାଠାରୁ ବେଶି ଟାଣ । ମାତ୍ର ଏ ଅଧମକୁ କିଏ ଟାଣୁଛି ? ଟାଣୁଛି ମାତ୍ର ପ୍ରାଣ—ବିଚରା ପୈତୃକ

Digitized by srujanika@gmail.com

ଢାଙ୍କି । ମାତ୍ର ସେ ପ୍ରାଣ ଯେ ବର୍ତ୍ତମାନ—କଣ୍ଠାଗତ । ଓଃ ! ନା; ଆଉ ହେବନାହିଁ । ରୁଦ୍ଧ ଭାବନା, ଟିକେ ଠିଆ ହୁଅ । ସିଗାରେଟ୍ ଖାଇବାକୁ ଯାଇ ଦେଖିଲି ସିଗାରେଟ୍ ଅଛି—ମାତ୍ର ଦିଆସିଲିଟା ଓଦା ହୋଇ ଯାଇଛି । ଗୁଡ଼ନ୍ତୁ ଆଜ୍ଞା—ଆଉ ଜୀବନରେ ଆଶା ନାହିଁ । ନୈରାଶ୍ୟ, କ୍ଷୁଧା, କ୍ଲାନ୍ତି, ବିରକ୍ତି, ଅବସାଦ । ଓଃ ସତେ କ'ଣ ଆଜି ରାତିରେ ନିର୍ବିଘ୍ନରେ ଯାଇ ଘରେ ପହଞ୍ଚିହେବ ? ଅସମ୍ଭବ । ଏ ରାସ୍ତା ସରିବ ନାହିଁ । ଏ କାଦୁଅ ଛାଡ଼ିବ ନାହିଁ । ଏ ସାଇକେଲ ଗଡ଼ିବ ନାହିଁ । ଶେଷକୁ ଏ ଜୀବନଟା ବି ରହିବ ନାହିଁ । ଯେଣୁପର ଚକରେ କାଦୁଅ ଲାଗୁଥାଏ । ନପୁନଯୋଡ଼ ପାଣିରେ ଧୂଆ ହେଉଥାଏ । ପୁଣି କଟୁବାଟ ଠେଲି ଚାଲିଥାଏ । ଶରୀର କ୍ଲାନ୍ତ—ମନ ଅବସନ୍ନ । ଏଣିକି ଜୀବନ ଲାଗିଛି ଜୀବନକୁ ବଞ୍ଚାଇବା ଲାଗି । ଜୀବନ ଟାଣୁଛି ଜୀବନକୁ । ମୁଁ କେବଳ ଯନ୍ତ୍ରବତ୍ ଠେଲୁଛି ସାଇକେଲକୁ କାଦୁଅ ଭିତରେ ।

ହଠାତ୍ କାଦୁଅ ରାସ୍ତା ସରିଯାଇ ବାଲିରାସ୍ତା ଚଢ଼ିଗଲା । ମନରେ ଆନନ୍ଦ କୁଟୁକି ଉଠିଲା । ହୃତ ସାହସ ପୁଣି ଫେରି ଆସିଲା । ସାଇକେଲ ଗଡ଼ି ଚାଲିଲା ସର୍ ସର୍ ବାଲିଆ ରାସ୍ତାରେ । ଚନ୍ଦ୍ର ବୁଡ଼ିଲେଣି । ଚାରିଆଡ଼ ଅନ୍ଧାର । ଦେହରେ ଆଉ ବଳନାହିଁ—ବ୍ରେକରେ ପେଟ ଜଳିଲାଣି । ମାତ୍ର ସାଇକେଲ ଗଡ଼ିଲା । ଗତିର ଉଲ୍ଲାସରେ ଦୁର୍ଗତିକୁ ବେଖାତିର କରି ମନ ଭିତରେ ଜୀବନୀ ଶକ୍ତି ସ୍ଲୋଗାନ୍ ଦେଲା—ସେହି ପରିଚିତ ପାରମ୍ପାରିକ ବୈଦିକ ସ୍ଲୋଗାନ୍—ଚରୈବେତି—ଚରୈବେତି—ଚରୈବେତି । ଆଗକୁ ଚାଲ—ଆଗକୁ ଚାଲ । ସାଇକେଲକୁ ନ ଠେଲି ମଧ୍ୟ ସାଇକେଲ ବାଲିଆ ରାସ୍ତାରେ ସର୍ ସର୍ ଗଡ଼ିଚାଲିଛି । ଘର ମାତ୍ର ? ଆଉ ତିନିମାଇଲ ମାତ୍ର । ସାଇକେଲ୍‌ର ଚଞ୍ଚଳ ଗତିରେ ଆଜି ରାତିର ଦୁର୍ଗତି ଶେଷ ହେଲାନାହିଁ । ଆମ ଲାଗି ଅପେକ୍ଷା କରିଛି ସର୍ବଶ୍ରେଷ୍ଠ ବିପଦ ଓ ସର୍ବଶ୍ରେଷ୍ଠ ଅନୁଭୂତି । ବାଲିଆ ରାସ୍ତା ସିନା ଆରମ୍ଭ ହେଲା । ଆରମ୍ଭ ହେଲା ମଧ୍ୟ ରାସ୍ତାର ଡାହାଣ କଡ଼େ କଡ଼େ ଘନ ଜଙ୍ଗଲ । ଏ ଜଙ୍ଗଲରେ ବାଘ ଅଛନ୍ତି । ବଡ଼ ବାଘ ସିନା ନାହାନ୍ତି, ମାତ୍ର ଛୋଟ ବାଘ ଅଛନ୍ତି । ଏଇ ଦିନେ ବାଘ ଆମ ଗ୍ରାମର ବଡ଼ଭାଇ ସାଇରେ ପଶି ବାଛୁରୀ, ଛେଳି, ମେଣ୍ଢା, କୁକୁର ଆଦି

Digitized by srujanika@gmail.com

ଜୀବଜନ୍ତୁଙ୍କୁ ଧରିନେଇ ଆତଙ୍କ ସୃଷ୍ଟି କରେ--ଆମେ ଜାଣିଛୁ । କାଦୁଅରାସ୍ତାରେ ସାଇକେଲ ଠେଲି ଠେଲି ଦେହରେ ଆଉ ବଳନାହିଁ । ଯଦି ସେଇ ଗ୍ରେଟିଆ କଲରା ପରି ଆ ବାଘଟାଏ ବି ହଠାତ୍ ଆମ ଆଗରେ ହେଁଟାଳି ମାରି ଲଞ୍ଜପିଟି ବାଟ ଓଗାଳି ବସିପାଏ, ଅନ୍ଧାର ଭିତରେ ଯଦି ଜଳିଉଠେ ତାରି ଖିଷଣ ହିଂସ୍ର ଆଖିର ବର୍ଣ୍ୟ ଅଗ୍ନି ତାରକା ! ଉଃ ! ହେ ଭଗବାନ ! ମୁଁ ତ ଏ ଦୃଶ୍ୟ ଦେଖୁଁ ଦେଖୁଁ ଆଗ ଏଇଠି ଟଳି ପଡ଼ିବି । ଉଃ, ହେ ଭଗବାନ ! ଏ ଯାଏ ବାହା ହୋଇନାହିଁ । ଧୂଅର ବାପା ହୋଇନାହିଁ । ପ୍ରଭୁ ! ଆଉ ଅନ୍ତତଃ ଦୁଇଟି ବର୍ଷ ଅପେକ୍ଷା କର । ମାତ୍ର ବର୍ଷ ଦୁଇଟା—ଏତେକ କାର୍ଯ୍ୟ ବଢ଼ିଯାଉ ।

ହଠାତ୍ ଗୋଟିଏ କୁକୁରକୁ ବାଘ ଓଟାରି ନେଇଗଲା ଭଳି କେଁ କେଁ ଶବ୍ଦ ରାସ୍ତାର ବାମପଟୁ ଶୁଭିଲା । ରାସ୍ତାର ଦକ୍ଷିଣ ପଟେ ଜଙ୍ଗଲ ମାତ୍ର ବାମପଟୁ ଆସିଲା ଶବ୍ଦଟା । ବାମ ପଟେଟ ଗୋଟିଏ କ୍ଷୁଦ୍ର ହରିଜନ ସାଇ । ବାଉଁଶବଣ ଭିତରେ ଛଅ ସାତଟି ହରିଜନ ଘର । ନିଶ୍ଚୟ ବାଘ ନେଇଗଲା କୁକୁରଟାଏ । ବାଘ ! ବାଘ ! ଜନ୍ତୁଟା ନଆଁ । ଅନ୍ଧାର ରାତିରେ ନିଦଘ ଜଙ୍ଗଲରେ ! ! ଗ୍ରାତ ଥରି ଉଠିଲା । ଦେହର ସମସ୍ତ ବଳ ହୁଗୁଳିଗଲା । ଉପ୍ତରେ ବୁଦ୍ଧି ହଜିଗଲା । ହଠାତ୍ ଦୁଇଜଣ ଯାକ ଥମ୍ବିଗଲୁ ।

ମୁଁ ଧୀର ଗଳାରେ କହିଲି, ଭାଇନା । ଶୁଣି ପାରିଲ ଏ ଚିତ୍କାର ?

ନରି ଭାଇନାଙ୍କର ତଣ୍ଟି ମଧ୍ୟ ଅଠା ଧରିଗଲାଣି । ସେ ଉପ୍ତରେ ଥରି ଥରି କହିଲେ; ହଁ ମନେ ହେଉଛି ବାଘ କୁକୁରଟାଏ ନେଇଗଲା ।

ଦୁଇଜଣ ଲକ୍ଷ୍ୟ କଲୁ—ସେଇ ବାଉଁଶ ବଣ ଭିତରେ ହରିଜନ ସାଇରୁ ଜଣକ ଘରେ ଆଲୁଅଟିଏ ମିଞ୍ଜି ମିଞ୍ଜି ଜଳୁଛି । ମନେ ହେଉଛି--ଏ ଘରରେ ଏବେବି ଲୋକ ଅଛନ୍ତି ଓ ସେମାନେ ଏ ଯାବତ୍ ଜାଗ୍ରତ । ପାଟିକରି ଡାକ ଛାଡ଼ିଲୁ—

ହଇଓ ଭାଇ-ଇ-ଇ-ଇ ! ଭାଇ ହୋ ଓ-ଓ-ଓ-ଓ ! !

ଉତ୍ତର ଆସିଲା—ହାଁ-ହାଁ ଆଁ ଆଁ ଆଁ··· ··· ···

Digitized by srujanika@gmail.com

କଣ କୁକୁରଟାଏ ନେଇଗଲା ?

ହଁ। ହଁ।—ଆଁ ଆଁ ଆଁ··· ··· ···

କଣ ବାଘ ?

ହଁ।—ହଁ।ଆ !

ଆଉ କ'ଣ ସନ୍ଦେହ ଥାଏ ? ବାଘର ଭୟାନକ ବ୍ୟକ୍ତିତ୍ୱ ଅପେକ୍ଷା ବାଘ ସମ୍ପର୍କୀୟ ଖାଲି ଚକିତ ପ୍ରଶ୍ନର ଏବଂ ଦୂରଗତ ସଂକ୍ଷିପ୍ତ ଉତ୍ତର "ହଁ। ହଁ।"ଟି--ରାତି ଦୁଇଟାବେଳେ—ଅନ୍ଧାର ଭିତରେ ଏବଂ କ୍ଳାନ୍ତଦେହ ଓ ମନ ପକ୍ଷରେ ଯଥେଷ୍ଟ ବେଶି ଭୟଙ୍କର । ସାଇକେଲ ସେଇଠି ଫୋପାଡ଼ି ଦେଇ ପ୍ରାଣ ବଞ୍ଚେଇବାରେ ଦୁଇହେଁ ଯାକ ରାସ୍ତା ତଳ ସେଇ ହରିଜନ ବସ୍ତି ଭିତରକୁ ଦଉଡ଼ିଲୁ । ରାସ୍ତା ତଳକୁ ଧାନବିଲ । ଛୋଟ ଛୋଟ ଧାନଗଛ ଉଠିଯାଇଛି । ବିଲଯାକ କାଦୁଅ-ପାଣି, ସେଥିରେ ପୁଣି କଣ୍ଟା ଚଉଡ଼ିଛି । ଗୋଡ଼ରେ କଣ୍ଟା ଫୁଟିଯାଇଛି—ମାତ୍ର ସେତେବେଳେ କିଛି ଜାଣି ହୋଇନାହିଁ—ବାଘର ଦାନ୍ତଠାରୁ ସେ କଣ୍ଟା ବେଶି ମୁନିଆ ନୁହେଁ । ପ୍ରାଣମୂର୍ଚ୍ଛା ଦଉଡ଼ ଲଗାଇ ଶହେ ଗଜ ପରେ ପହଞ୍ଚିଲୁ ସେଇ ମିଞ୍ଜି ମିଞ୍ଜି ଆଲୁଅ ଜଳୁଥିବା ଘରଟିର ପିଣ୍ଡାରେ । ଯାଇ କଣ ଦେଖିଲୁ ? ଆଃ—ବାଘୁଆ ରାତିର ନିରାଶ୍ରୟ ଭୟଙ୍କର ବାୟୁମଣ୍ଡଳ ଭିତରେ ସେଭଳି ଦୃଶ୍ୟ କେତେ ଭରସା କେତେ ଆଶ୍ୱାସନା ଦିଏ—ସେ କଥା ମୁଁ କିପରି ବୁଝାଇବି ? ଛୋଟ ବଖୁରିଆ ଘରଟିଏ । କିରୋସିନ ଡିବିଟିଏ ମିଞ୍ଜି ମିଞ୍ଜି ଜଳୁଛି । ବୁଢ଼ୀଟିଏ ଜାକିଜୁକି ହୋଇ ବସିଛି--ଭୁଆସୁଣୀ ବୋହୂଟିଏ ଠିଆ ହୋଇଛି ନାଲିକସ୍ତା ଖଣ୍ଡିଏ ପିନ୍ଧି । ଆଉ ଯୁବକ ଗୃହସ୍ଥଟି ମାଥା ଆଉ ଭାର୍ଯ୍ୟାଙ୍କ ଆଖିତଳେ ଖାଇ-ବସେ । ବୋଧହୁଏ ରାତିରେ ମାଛଧରି ଯାଇଥିଲା । ମାଛଧରି ବେଶି ରାତିରେ ଫେରୁଛି । ଯୁବତୀ ଭାର୍ଯ୍ୟା ମାଛ ତରକାରି ରାନ୍ଧି ପରଷିଛି । ଲୋକଟି ଆରାମରେ ଖାଇ ବସିଛି । କେଡ଼େ ଶାନ୍ତ ଆଉ ନିଶ୍ଚିନ୍ତ ପରିବାରଟି ! ! ରାତିଯାକ ବର୍ଷା ପାଣିରେ ଭିଜି ଭିଜି ମାଛଧରି ଫେରିଛି । ଖାଇ ସାରିଲେ ଆଲୁଅ ଲିଭିବ—ଏ ବର୍ଷା ରାତି—ମାଛ ତରକାରି । ପାଖରେ ନାଲିକସ୍ତା ପିନ୍ଧି ଯୁବତୀ ଭାର୍ଯ୍ୟା । ଖଣ୍ଡିଏ ଛୋଟ ନିରାପଦ ଘର । ଆଃ—ପ୍ରଭୁହେ !

Digitized by srujanika@gmail.com

ଜଗତରେ ତା'ହେଲେ 'ସୁଖ' ଅଛି, 'ଶାନ୍ତି' ଅଛି । ଆଖି ଆଗରେ ଖାଦ୍ୟ ଅଛି । ଆଜି ଆଗରେ ଖାଦ୍ୟ ଦେଖି ଦେଖି ପେଟ ଛଟପଟ ହେଲା । ମାତ୍ର ଏହା କ୍ଷୁଧାଶାନ୍ତିର ସମୟ ନୁହେଁ । ପ୍ରାଣ ରକ୍ଷାର ଉପାୟ ଚିନ୍ତାକର । କ୍ଲାନ୍ତ ଦେହରେ—ଅନ୍ଧାରରାତିରେ—ନିରାଶ୍ରୟ ଅବସ୍ଥାରେ—ବାଘ—ବାଘ—ବାଘ—ବାଘ । ମୋ ମନରେ କେବଳ ବାଘର ଭୟ ମାଡ଼ି ବସିଛି । ଲୋଡ଼ା କେବଳ ଆଶ୍ରୟ ! କିନ୍ତୁ ଏତେ ରାତିରେ ହଠାତ୍ ଆମ ଦୁଇଜଣଙ୍କୁ ଦେଖି ସେ ପରିବାରର ଶାନ୍ତି ନିଶ୍ଚିନ୍ତତା ହଠାତ୍ ବିଘ୍ନିତ ହୋଇ ପଡ଼ିଲା । ସନ୍ତ୍ରସ୍ତହୋଇ ସନ୍ଦେହ ଆଖିରେ ସେମାନେ ଚାହିଁ ରହିଲେ—ମୁଁ ପାଟି ଖୋଲିଲି—

ହଇଓ ଭାଇ ! ଯେଉଁ କୁକୁର ଚିତ୍କାର ଶୁଭିଲା—ସେଇଟା କ'ଣ ବାଘ ନେଇଗଲା କୁକୁରଟାଏ ?

ହଁ, ହଁ ବାଘ । ତମେ କିଏ ?

ମୁଁ ଖୁବ ବିନୀତ ହୋଇ କହିଲି—ଦେଖ ଭାଇ । ଆମ ଘର ଏଇ ନିଆଳୀ ଗ୍ରାମରେ । ଆମେ ଅମୁକ ମହାପାତ୍ରଙ୍କ ପିଲା । ଗୋଟିଏ ଜରୁରୀ କାମରେ କଟକ ଯାଇଥିଲୁ । ଫେରୁ ଫେରୁ ବର୍ଷାହେଲା । ରାତି ହୋଇଗଲା । ଏଣିକି ଜଙ୍ଗଲ—ପଡ଼ିଲାଣି । ସେଥିରେ ପୁଣି ବାଘ ଏମିତି । ଆଜି ଯାଇ ପାରୁନାହୁଁ । ଭାରି ଭୟ ଲାଗୁଛି । ଆଜି ତ ଅଳ୍ପରାତି ଅଛି ଆମେ ଟିକେ ତୁମ ପିଣ୍ଡାରେ ପାହାନ୍ତାଯାଏ ଠିଆ ହୋଇଯିବୁ । ସକାଳ ହେଲେ ପଥ ସୁମରି ପିଚାଘର ଯିବୁ ।

ମୋର କଥା ନ ସରୁଣୁ ହରିଜନ ବୁଢ଼ୀଟି ହଠାତ୍ ଘର କବାଟ ଆଉଜେଇ ଦେଇ ଭିତରୁ କିଳିଦେଲା । ଆଉ ଭିତରୁ ଥାଇ ଜବାବ ଦେଲା । ନା-ନା, ତମେ ଏଠୁ ଯାଅ—ଏତେ ରାତିରେ—ନା ନା, ତମେ ଯାଅ—ଯାଅ ।

ଆମ ଆଖି ଆଗରୁ ଶେଷ ଆଲୁଅଟି ମଧ୍ୟ ଲିଭିଗଲା । ମୁଁ ଶେଷ ଚେଷ୍ଟାକରି କହିଲି—ହଇଓ । ଆମେ ଚୋର ନୋହୁଁ କି ତସ୍କର ନୋହୁଁ ।

Digitized by srujanika@gmail.com

ନଆଳୀ ଗ୍ରାମର ଅମୁକଙ୍କ ପୁଅ । ଆମେ ଏମିତି ବିପଦରେ ପଡ଼ିଛୁ । ତୁମ ମନରେ ଦୟା ହେଉନାହିଁ ?

ଡାକ୍ତର ଭାଇନା କହିଲେ, ହଇଓ ଭାଇ ଧର୍ମ କଣ ନାହିଁ ?

କିନ୍ତୁ ଘର ଭିତରୁ ଆଉ ଜବାବ ମଧ୍ୟ ଆସିଲା ନାହିଁ । ନିରାଶ ହୋଇ ମୁଁ ଡାକିଲି ହଇଓ ମାଉସୀ ! ନହେଲା ନାହିଁ । ଆମକୁ ଖଣ୍ଡିଏ ଠେଙ୍ଗା ଦେଲେ ହଅ । ଆମେ ଠେଙ୍ଗା ଖଣ୍ଡିଏ ଆଶ୍ରା ପାଇଲେ ହେଲେ ଭରସିକରି ରାସ୍ତାରେ ଗୋଟି ଗୋଟି ଚାଲିବୁ ।

କିନ୍ତୁ ଉତ୍ତର ନାହିଁ । ସେମାନେ ଆମକୁ ନିଶ୍ଚୟ ଭୟ କରୁଛନ୍ତି । ଯେତେ କଅଁଳେଇ ବୁଝେଇ ଡାକିଲୁ--କେହି ଶୁଣିଲେ ନାହିଁ । ମୋ ମୁଣ୍ଡକୁ ରାଗରେ ପିତ୍ତ ଉଠିଗଲା । ସ୍ୱାଳ୍ପ ସ୍ୱାର୍ଥପର ! ପାଷାଣ ହୃଦୟ ଏଗୁଡ଼ାଙ୍କର ।

ଏମାନେ ତ କବାଟ ଦେଇ ଦେଲେଣି । ବର୍ତ୍ତମାନ ଏଠି ନିରାଶ୍ରୟ ଭାବେ ଠିଆ ହେବା, ଯାହା ରାସ୍ତାରେ ଠିଆ ହେବା ସେଇଆ । ବାଘ ନିଶ୍ଚୟ ଖାଇବ, ଉଃ, ସେ ଅନ୍ଧାରିଆ ବାଉଁଶ ବଣ ଭିତରେ ବାଘ ଥାଉ ନ ଥାଉ, ବାଘର ବ୍ୟକ୍ତିତ୍ୱଟା ନିଶ୍ଚୟ ଲୁଚି ରହିଛି । ଦୁହିଁଙ୍କ ହାତରେ କିଛି ନାହିଁ । ବାଘ ଯଦି ଆସେ ଆତ୍ମରକ୍ଷା କରିବୁ କିପରି ? ମୁଁ ଭୟ ଓ ନିରାଶାରେ ପାଗଳ ଭଳି ହୋଇଗଲି । ନାଃ, ନିଶ୍ଚୟ ଖଣ୍ଡିଏ ଲାଠି ଦରକାର । ପାଗଳା ଭଳି ଲାଠି ଉଦ୍ଦେଶ୍ୟରେ ଏଣେତେଣେ ଦରାଣ୍ଡିଲି । ହଠାତ୍ ମୋ ହାତରେ ଖଣ୍ଡିଏ ଲାଠି ପଡ଼ିଗଲା ସେଇଟା ଲାଠି ନୁହେଁ । ଦରିଦ୍ର ହରିଜନ ଗୃହର ଗୋଟିଏ ବାଉଁଶ ଖମ୍ବ । ଭୟୋନ୍ମତ୍ତ ହୋଇ ସଜୋରେ ସେଇଟିକୁ ଉପାଡ଼ି ଦେଲି । ମଡ ମଡ କରି ସେଇଟା ଉପୁଡ଼ିଗଲା । ନଇଁଗଲା ଚାଳଟା । ମାତ୍ର ଏ ବ୍ୟାପାରରେ ବି ଘର ଭିତରୁ କିଛି ପ୍ରତିବାଦ ଆସିଲା ନାହିଁ ; ସେମାନେ ମଧ୍ୟ ଘର ଭିତରେ କବାଟ କିଳି ଚୁପଚାପ ବସି ଅପେକ୍ଷା କରୁଛନ୍ତି । ଏହାପରେ କଣ ହେବ ? ହୁଏତ ସେମାନେ ପାଟିକରି ଉଠିଥାନ୍ତେ ।

Digitized by srujanika@gmail.com

ମାତ୍ର ଏଣେ ସେଇ ବାଉଁଶର ଲଠି ଖଣ୍ଡିକ ମୋ ହାତରେ ପଡ଼ିବା ମାତ୍ରେ ମୋ ଭିତରେ ନୂତନ ଉତ୍ସାହ ଫେରି ଆସିଲା । ମୋର ସମସ୍ତ କ୍ଳାନ୍ତି କୁଆଡେ ଉଡ଼ିଗଲା । ମୁଁ ହଠାତ୍ ନିଜକୁ ପ୍ରବଳ ପରାକ୍ରାନ୍ତ ବୋଲି ମନେ କଲି । ଏ ତ ସାମାନ୍ୟ ଖଣ୍ଡେ ବଂଶ ଦଣ୍ଡ ନୁହେଁ ! ଆମର ଦୁର୍ବଳ ହତାଶାର ବଜ୍ରଦଣ୍ଡ । ମୁଁ ଏବେ ବି ଆଶ୍ଚର୍ଯ୍ୟ ହୁଏ ସାମାନ୍ୟ ଖଣ୍ଡେ ବଂଶଦଣ୍ଡ କିପରି ଗୋଟାଏ କ୍ଳାନ୍ତ ହତୋଶ ଅସହାୟ ଧିକ୍ କାତର-ମୁହୂର୍ତ୍ତରେ ଦେହରେ ମତ୍ତ ହସ୍ତୀର ବଳ ସଞ୍ଚାର କରିଦିଏ । ନୂତନ ଲବ୍ଧ ସାହସ ଓ ବଳର ପ୍ରବଳତାରେ ମତୁଆଲା ହୋଇ ମୁଁ ବାଉଁଶଟିକୁ ବୁଲାଇ ଲଗିଲି । ସତେ କି ମୁଁ ବାଘ ସଙ୍ଗରେ ଲଢ଼େଇ କରୁଛି । ବାଘ ମୋ ଉପରକୁ ଝାମ୍ପିବ ବୋଲି ମୋ ଚାରିପଟେ ଘୂରୁଛି ଏବଂ ମୁଁ ବଡ଼ ଗୋଟାଏ ଓସ୍ତାଦ ଲଠିଆଳ ଭଳି ଲଠି ବୁଲାଇ ଲଗିଛି । ସେ ଗୋଟେ ଭୟଙ୍କର ପ୍ରାଣମୂର୍ଚ୍ଛା । ଆତ୍ମରକ୍ଷା-କାତର ଲଠି ଖେଳର ଉନ୍ମାଦନା ! ରେ ପାଷାଣ୍ଡ ବ୍ୟାଘ୍ର ! ଆଜି ତୋତେ ପିଟି ପିଟି ତୋର ମୁଣ୍ଡକୁ ମୁଁ ଛତୁ କରିବି । ଦେଖିବି, କିଏ ତୋତେ ଆଜି ମୋ ହାତରୁ ରକ୍ଷା କରିବ । ଦେଖ ଦେଖ ପାଷଣ୍ଡ କେତେ ମୋର ଶକ୍ତି ! ।

ମନ ଭିତରେ ଏହି ବୀରତ୍ୱପୂର୍ଣ୍ଣ ସାହସିକ ବଚନକୁ ଆବୃତ୍ତି କରି ମୁଁ ପାଗଳଙ୍କ ପରି ଘାଇଁ ଘାଇଁ ଲଠି ବୁଲାଇ ଲଗିଛି । ପ୍ରକୃତରେ ମୁଁ ପାଗଳ ହୋଇ ଯାଇଥିଲି । ବାଘ ମୁହଁରେ ନିରାଶ୍ରୟ ଭାବରେ ପ୍ରାଣ ବିସର୍ଜନ ଜନିତ ଆଶଙ୍କା ଓ ହତାଶା ଭିତରେ ସେଇ ବାଉଁଶ ଲଠି ଖଣ୍ଡିକ ମୋତେ ନୂତନ ସାହସ ଓ ଉନ୍ମାଦନାରେ ପାଗଳ କରିଦେଇଥିଲା । ଘାଇଁ ଘାଇଁ ଲଠି ବୁଲାଇ ଲଗିଛି । ମାତ୍ର ଡାକ୍ତର ନବ ଭାଇନା ବଡ଼ ଧୀର ସ୍ଥିର ଲୋକ । ସେ ଦାଟିକରି ଉଠିଲେ—ହେଃ—ସେମିତି ଗୋଟେ କଣ ହେଉଛୁ ତୁ ଲଙ୍କ ଭଳି ? ଏଇଟା କଣ ଲଠି ଖେଳ ବେଳ ? ଚାଲ ଚାଲ ରାସ୍ତାକୁ ଫେରି ଚାଲ । ଧୀରେ ଧୀରେ ଚାଲିଯିବା । ହେଃ । କାହିଁ ସେପରି ଲଠି ବୁଲାଉଛୁ ବେ ? ବାଜିବ ମୋ ଦେହରେ । ହେଃ— ହେଁ ଆରେ—ହେଃ—

Digitized by srujanika@gmail.com

ହଠାତ୍ ଏ ଶବ୍ଦରେ ମୋର ଚାଗଳାମି ଘୁଞ୍ଚିଗଲା । ମୁଁ ହଠାତ୍ ସଜାଗ ହୋଇ ଉଠିଲି । ପ୍ରକୃତ କଥା, ମୁଁ ଗୋଟାଏ କାଳ୍ପନିକ ବାଘ ବିରୁଦ୍ଧରେ ଲାଠି ଚଳାଉଛି । ନର ଭାଇନା ପୁଣି କହିଲେ—ଚାଲ ଚାଲ—ଚଞ୍ଚଳ ଯିବା—ଆଉ ଅଳ୍ପ ବାଟ—ଘରେ ପହଞ୍ଚିବା—ଲାଠି ଖଣ୍ଡିଚ ଯାହା ହେଉ ହାତରେ ପଡ଼ିଗଲାଣି । ଭାଉଜ ତେଣେ ବଡ଼ ବ୍ୟସ୍ତ ହେଉଥିବ । ପିଲାଟିକୁ ଏତେ ଜର ନା !

ପ୍ରକୃତିସ୍ଥ ହୋଇ ଆମ୍ଭେମାନେ ଲାଠି ଧରି ପୁଣି ରାସ୍ତାକୁ ଫେରି ଆସିଲୁ । ମୋର ମନେ ହେଲା—ଏଇ ମୁହୂର୍ତ୍ତକ ଲାଗି ମୁଁ ଅବା ସବୁ ଭୁଲି ଯାଇଥିଲି । କେବଳ ବାଘ ଆଉ ମୁଁ ଏବଂ ମୋର ଲାଠି ଥିଲା । ମାତ୍ର ନର ଭାଇନାଙ୍କ କଥାରେ ମୋର ପୁଣି ବାସ୍ତବତା ଜାଗି ଉଠିଲା । ଡାକ୍ତର ନର ଭାଇନା ତାଙ୍କର ଦେଢ଼ ବର୍ଷର ବିବାହିତା ପ୍ରବାସୀ ଭାର୍ଯ୍ୟା—ଏ ଝିଅ ରାତି—ଆଠ ଦଶ ମାସର ଶରୀର ଉଦ୍ଗୀର୍ଣ୍ଣ ଜ୍ୱରକ୍ଲାନ୍ତ ଶିଶୁପୁତ୍ର ବାତ୍ସଲ୍ୟ ରସ ଓ ମଧୁର ରସର ସମାହାର ଦ୍ୱନ୍ଦ୍ୱର ମେଘାଚ୍ଛନ୍ନ ଆବେଗ । ନବାନୁଲବ୍ଧ ପିତୃ ହୃଦୟର ବାତ୍ସଲ୍ୟ ଉନ୍ମାଦନାରେ ସେ ଉନ୍ମାଦିତ—ଅପେକ୍ଷମାନା ପ୍ରିୟବନ୍ଧୁ ଯୁବତୀ ଭାର୍ଯ୍ୟାର ଘନ ଘୋର ବର୍ଷଣ-କ୍ଲାନ୍ତ-ନୈଶ ସ୍ମୃତି-ଜନିତ ଉତ୍ତେଜନାରେ ସେ ଉଚ୍ଛାଟିତ । କିନ୍ତୁ ମୁଁ ବିଚରା ହତଭାଗ୍ୟ—ବ୍ୟର୍ଥ ମୋର ଏଇ ଉନ୍ମାଦନା—ବୃଥା ମୋର ଏଇ ଉତ୍ତେଜନା ! କେବଳ ବୁଦ୍ଧିହୀନ ଅହେତୁକ ଅତୋର୍ଥର ଲାଠିଖେଳ । ଲାଠି ଖଣ୍ଡିକ ହାତରେ ଧରି ରାସ୍ତା ଉପରକୁ ଆସିଲୁ । ସାଇକେଲ ଦୁଇଟି ରାସ୍ତାରୁ ଉଠାଇ ଚାଲିବାକୁ ଆରମ୍ଭ କଲୁ । ଲାଠି ଆମକୁ ଭରସା ଦେଉଛି । ମାତ୍ର ଭୟଶୂନ୍ୟ କରିନାହିଁ, ନିସ୍ତବ୍ଧ ରାତି—ଅନ୍ଧକାର ରାତି—ମେଘାବୃତ ରଜନୀ—ଜନହୀନ, ଶବ୍ଦହୀନ ପରିବେଶ । ଆମେ ଚାଲିଛୁ । ସାଇକେଲ ବେଶ୍ ଚଳୁଛି । ରାସ୍ତାର ଦକ୍ଷିଣ ପଟରେ ଜଙ୍ଗଲ । ଘର ଆଉ ହୁଏତ ଦେଢ଼ ମାଇଲ ଅଛି । ମାତ୍ର ଆଉ ଅଧ ମାଇଲ ଗଲେ ପଡ଼ିବ ଗୋଟେ ବଡ଼ ଗାଁ । ପାଟକୁ ଚାଲିଗଲେ ଆଉ କିଛି ଭୟ ନାହିଁ । ନିର୍ଭୟରେ ସ୍ୱଗ୍ରାମ ପ୍ରବେଶ ସହଜ ହୋଇଯିବ । ସେଇ ଗ୍ରାମ ହାଣ୍ଡି ଭିତରେ ପଶିଗଲେ ଆଉ ଭୟ କଣ ? ହାଣ୍ଡେ ହାଣ୍ଡେ ଚାଲିଯିବୁ ଓ ପହଞ୍ଚିଯିବୁ ଆମ ଗ୍ରାମରେ

Digitized by srujanika@gmail.com

ରାସ୍ତାବାଟେ ଗଲେ ବୁଲଣି । ମାତ୍ର ଏଇ ଅଧମାଇଲର ବାଟ ପୁଣି କଟିବ କିପରି ? ରାସ୍ତା କଡେ କଡ଼େ ବଣ ଲାଗିଛି ସେଇ ଗ୍ରାମ ପର୍ଯ୍ୟନ୍ତ । ସେଇ ଛମ୍ ଛମ୍ ନିସ୍ତବ୍ଧତା ଭିତରେ ଆମ ମନରେ ବାଘର ଭୟ ପୁଣି ସଜାଗ ହୋଇ ଉଠିଲା । ଆମର ମନେ ହେଲା ଆମକୁ ଛକ ଛକ, ଆମ କଡ଼ କଡେ ବଣ ବୁଦା ଭିତର ଦେଇ ଗୋଟାଏ ବାଘ ଛପି ଛପି ଚାଲିଛି । ସୁଯୋଗ ପାଇଲେ ଡେଇଁବ ଆମ ଉପରକୁ । ନାଃ-ନାଃ ଭାଇନା । ଆଉ ଯାଇ ହେବନାହିଁ । ବାଘ କୁକୁରଟାକୁ ନେଇ ହୁଏତ ପଳାଇ ଯାଇଛି ଦୂରକୁ, ମାତ୍ର ବାଘୁଣୀ ଧରିଲାଣି ଆମ ପିଛା । ମେଞ୍ଚାଏ ଜନ୍ତୁଜୁଳା ପୋକ ରାସ୍ତା କଡ଼ର କୌଣସି ବୁଦା ଡାଳରେ ଏକାଠି ଦେଖି ମଧ୍ୟ ବାଘର ଅଗ୍ନି ବର୍ଷି ଆଖିର ଭ୍ରମ ହୋଇ ଛାତି ଦାଉଁ ଦାଉଁ ପଡ଼ୁଛି । ବାଘ ଭୟ ପୁଣି ମୋତେ ମାଡ଼ି ବସିଲା—ମୁଁ ପୁଣି ଭୟବିହ୍ୱଳ ହୋଇପଡ଼ି ଅପ୍ରକୃତସ୍ଥ ହୋଇ ଉଠିଲି । ଅତ୍ୟଧିକ ଭୟର ତୋଡରେ ମୁ ଅସାଧାରଣ ଭାବେ ଖିପ୍ର ହୋଇ ଉଠି ହଠାତ୍ ଠିଆ ହୋଇ ପଡ଼ି କହିଲି—ଭାଇନା ! ଗୋଟେ କଥା କରିବା । ଆମକୁ ଗୋଟେ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼ିବ । ଇତର ଜନ୍ତୁ ସଙ୍ଗେ ଲଢିବା ଲାଗି ମନୁଷ୍ୟକୁ ଭଗବାନ ଯଥେଷ୍ଟ ଦୈହିକ ବଳ ଦେଇ ନାହାନ୍ତି । ମାତ୍ର ଲକ୍ଷଗୁଣ ବୁଦ୍ଧିମାନ ଆମ୍ଭେମାନେ, ଏଇ ସବୁ ଇତରଏଠ ବାଘ ଫାଗ ଜନ୍ତୁମାନଙ୍କ ଠାରୁ । ଆମକୁ ବାଘର ପଶୁ ମନସ୍ତତ୍ତ୍ୱର ସୁଯୋଗ ନେବାକୁ ହେବ । ବାଘ ମନରେ ଗୋଟିଏ ଭ୍ରମଧାରଣା ସୃଷ୍ଟି କରିବାକୁ ହେବ । ଆମେ ଦୁହେଁ ସାଇକେଲ ଘଣ୍ଟି ଦୁଇଟାକୁ ଜୋରରେ ଅବିରାମ ବଜାଇବା ଏବଂ ବଡ଼ ପାଟିରେ କଥାବାର୍ତ୍ତା କରିବା । ପାଟିର ସ୍ୱରଗ୍ରାମ ମଧ୍ୟ ପରିବର୍ତ୍ତନ କରି କଥାବାର୍ତ୍ତା ହେବା । ଆମେ ଦୁଇ ଜଣ ଆମ କଣ୍ଠ ସ୍ୱରରେ ସାରିଗାମାପାଧାନି ସ୍ୱର ଗ୍ରାମର ଉତ୍ଥାନ ପତନ ମଧ୍ୟ ଦେଇ ଓ ଉଚ୍ଚଧ୍ୱନ ତୋଳି କଥାବାର୍ତ୍ତା କରି ଚାଲିବା । ଇତରଏଠ୍ ବାଘ ନିଶ୍ଚୟ ଭାବିବ ଯେ ରାସ୍ତାରେ ଦୁଇଜଣ ଲୋଭମାପ୍ର ମନୁଷ୍ୟ ମାତ୍ର ଚାଲିନାହାନ୍ତି—ଚାଲିଛନ୍ତି ଅସଂଖ୍ୟ ଭୟଙ୍କର ଅସ୍ତ୍ରଧାରୀ ଶିକାରୀ ମନୁଷ୍ୟ । ସାଇକେଲ ଘଣ୍ଟି ଶବ୍ଦ ତା' କାନରେ ନିଶ୍ଚୟ ଏକ ପ୍ରକାର ବାଘମାରଣ ଅସ୍ତ୍ରର ଝନତ୍କାର ପରି ଭୟଙ୍କର ଶୁଭିବ । ତେଣୁ ସେ ନିଶ୍ଚୟ ସ୍ୱଚ୍ଛନ୍ଦରେ ରାସ୍ତା ଉପରକୁ ଆସି ଆମକୁ ଆକ୍ରମଣ କରିବାକୁ ସାହସ କରିବନାହିଁ ।

Digitized by srujanika@gmail.com

ମୁଁ ଭାବପ୍ରବଣ ହୋଇ ଯୁକ୍ତି କଲି—ବାଘର ଆଖି ଅଛି ସତ, କିନ୍ତୁ କାନରେ ସେ ଯାହା ଶୁଣିବ—ଆଖିରେ ସେ ତାହାହିଁ ଦେଖିବାକୁ ବାଧ୍ୟ।

ନର ଭାଇନା ଏଥର ଅଡୁଆରେ ପଡ଼ିଲେ। ଯାହା କହିଲୁ ସତ୍ୟ, ମାତ୍ର ଆମେ ବର୍ତ୍ତମାନ ଏପରି ଅବସ୍ଥାରେ କେଉଁ ବିଷୟରେ କଥାବାର୍ତ୍ତା କରି ପାରିବା ? ଅନ୍ତତଃ ଏତେବେଳ ଜଙ୍ଗଲ ପଥ ଅତିକ୍ରମ କରିବାକୁ ଆମକୁ ଅଧଘଣ୍ଟାଏ ସମୟ ଲାଗିପାରେ। ତୁ ଅଧ୍ୟାପକ ମଣିଷ, ଗପିବା ତୋର ଅଭ୍ୟାସ, ଗୁଡ଼ାଏ ଏଣୁ ତେଣୁ କଣ ଗପିପାରୁ। ମାତ୍ର ମୁଁ କଣ ଗପିବି ? ରୋଗୀ ସଙ୍ଗେ ବେଶୀ କଥାବାର୍ତ୍ତା କରିବା ଆମ ଡ଼ାକ୍ତରଙ୍କ ପକ୍ଷରେ ନିଷିଦ୍ଧ।

ମୁଁ କହିଲି ସେକଥା ଠିକ୍। ମାତ୍ର ରୋଗୀଙ୍କର ଫିସ୍ ଟଙ୍କା ଆଦାୟ କଲାବେଳେ ତମେ ଯେଉଁସବୁ କଥା ଯେଉଁ ପାଟିରେ କୁହ ସେଇଗୁଡ଼ାକ ଗପିବାକୁ ଆରମ୍ଭକର। ହୁଏତ ତୁମ କଥା ଓ ମୋ କଥା ଭିତରେ କିଛି ଅର୍ଥଗତ ବା ଭାବଗତ ସମ୍ପର୍କ ରହିବନାହିଁ। ମାତ୍ର ଉପସ୍ଥିତ ବାତୁଳତାର ସମ୍ପର୍କ ନିଶ୍ଚୟ ରହିବ। ଦେଖ ତୁମେ ପ୍ରସ୍ତୁତ ହୁଅ। ବଜାଅ ଘଣ୍ଟି—ମୁଁ ଆରମ୍ଭ କଲି, ସାରଳା ଦାସଙ୍କ ଚରିତ୍ର ଚିତ୍ରଣ। ବଡ଼ ପାଟିରେ ଆରମ୍ଭ କରିଦେଲି—ସମ୍ମାନନୀୟ ସଭାପତି ମହୋଦୟ ଓ ସୁଧୀବୃନ୍ଦ !

"ସାରଳା ଦାସଙ୍କ ମହାଭାରତରେ ଯେତେ ଚରିତ୍ର ଅଛି ସେ ସବୁ ଚରିତ୍ର ମଧ୍ୟରେ ଭୀମ ଚରିତ୍ର ହିଁ ବାସ୍ତବିକ ପ୍ରଶଂସନୀୟ ଚରିତ୍ର। ଏହି ଭୀମ ଅମିତ ପରାକ୍ରମ ଶାଳୀ ଭୀମ, ଯେ ଶିଶୁ କାଳରେ ଗୋଇଠା ପ୍ରହାରରେ ଶତଶୃଙ୍ଗ ପାହାଡ଼କୁ ଭାଙ୍ଗିଥିଲା, ବିଧାଘାତରେ ବକାସୁରର ପିଠି ଭାଙ୍ଗିଥିଲା, ଚାପୁଡ଼ାଘାତରେ ହିଡ଼ମ୍ବାସୁରର ଗାଲ ଫଟେଇଥିଲା, ଦୁଃଶାସନର ଛାତି ବିଦାରିଥିଲା, ଦୁର୍ଯ୍ୟୋଧନର ଊରୁ ଭାଙ୍ଗିଥିଲା—ସେଇ ଭୀମ, ସେଇ ଭୀମ ସେଇ···ସେଇ···ସେଇ···ସେଇ ସାରଳା ଦାସ—ଝିଙ୍କଡ଼···ମା ଶାରଳା ଦାସ···ପଞ୍ଚୁପାଣ୍ଡବ···ହେ ଶାରଳା ଦାସ···ହେ ଶାରଳାଦାସ···ଆରେ ଭୀମ···ହରି ହୋ ନାମିଲେ···ହେ ଆମ୍ଭନ୍ !

ଦେଖ ଦେଖ···ଧର ଧର···ମାର ମାର···ଭାଙ୍ଗ ତାର ପିଠି···ଭାଙ୍ଗ ତାର ଗୋଡ଼···ଆରେ ଆରେ ଭେଣ୍ଡା ··ଧର ଧର ଖଣ୍ଡା···ଆରେ ପାଜି ହୁଣ୍ଡା—ଷଣ୍ଢା—ଚୂପ୍ କର ହୁଣ୍ଡା । ଓଃ କିଏ ତୁମ୍ଭ—କିଏ ମୁହିଁ ? ମୁହିଁ କିଏ—ମୋତେଦେବ କିଏ ତୁମ୍ଭଃ ? ଡ୍ଡ଼୍ ଡ୍ଡ଼୍—ହାଃ ହାଃ ହାଃ—ମକୁନ୍ଦା ଧକ୍ ଧକୁନ୍ଦା—ହୋଃ ହୋଃ ହୋଃ—ତୋ ବୋପା କେମିତି ମଲା ? ହେ ହେ ହେ—

ଡାକ୍ତର ନରହରିନା ଗପି ଚାଲିଥାନ୍ତି "ଷୋଳ-ଟଙ୍କା ଫିସ୍—ଦେଖିଲି ମୁଁ ଅଧଘଣ୍ଟେ—ହୋଇଅଛୁ ତୋର—ନୁହେଁ ତାହା ନମୋନିଆ—ଅଟେ ଟାଇଫଡ଼୍ ନୁହେଁ ଟାଇଫଡ୍ । ଯଦି ଘୋଟିଲାଣି ଟିକ ଏନିମିଆ-ନଷ୍ଟେ କମ୍ବା ହୁକ୍‌ଓର୍ମ ସିଫିଲସ୍ ଅଛୁ ରକ୍ତେ ନିଅ ପେନ୍‌ସିଲନ୍, ଡିସେଣ୍ଟ୍ରି, ନଷ୍ଟେ ନଷ୍ଟେ ତାହା ଆସିବକ ଡିସେଣ୍ଟ୍ରି—ଖାଅ ଭିଟାମିନ୍—ଖାଅ ଫେରିଲକ୍‌ସ, ଷ୍ଟ୍ରେପ୍ଟୋମାଇସିନ—ନିଅ—ଖାଅ ଭିଟାମିନ୍—ଦିଅ ଷୋଳଟଙ୍କା, ଷୋଳ ଟଙ୍କା ଦିଅ । ଓଃ ଉଠାଅ ଏ ଟଙ୍କା-ମାଗୁନାହିଁ ଭିକ୍ଷା -ହକ୍ ଷୋଳ ଟଙ୍କା । ମରୁ ତୋ ଭାରିଯା । ମରୁ ତୋର ପୁଅ—କି ଯାଏ ମୋହର ? ଦେ ଷୋଳ ଟଙ୍କା, ବଞ୍ଚିଯାଆ ତୁମ୍ଭ—ବଂଚିଯାଏ ମୁହିଁ—ଏ ମାୟା ସଂସାରରେ ମୂଢ଼ ! କା'ତବ କାନ୍ତା ? ଆରେ କସ୍ତେ ପୁତ୍ରଃ ? ଦେଇ ଷୋଳ ଟଙ୍କା, ନିଜେ ବଞ୍ଚିଯାଅ, ମଂତେ ମଧ୍ୟ ବଂଚୁ—ମରିବୁ ମରିବୁ ତୁମ୍ଭ ନିଶ୍ଚୟ ମରିବୁ । କାଢ଼ ଷୋଳ ଟଙ୍କା । —ଲପ୍ ଧପ୍—ଲପ୍ ଧପ୍—ଲପ୍ ଧପ୍·····ଧପ୍ ଧପ୍·····ଧପ୍ ଧପ୍, ଧପ୍ ଧପ୍—ଧପାଡ଼୍ ଧପାଡ଼୍—ଘିର୍ ଘିର୍ କୋଇ···ଘିର୍ ଘିର୍—କୋଇ । —ମୋର ଚାଲିଥାଏ—"ଚୂପ୍ କର ଭୀମ, ଚୂପ୍ କର ଦୁଃଶାସନ, ଚୂପ୍ କର ହେ ସାରଳା ଦାସ । ଆସ ମୋହ ସଙ୍ଗେ କର ରଣ । ମାରିଲି ବାବଲି ଶର—ଧର ତୋ ଗାଣ୍ଡୀବ । ଦେଖା ସୁଦର୍ଶନ ଚକ୍ର । ବଜା ପାଞ୍ଚଜନ୍ୟ—ଧର ଗଦା, କର ଯୁଦ୍ଧ ବୀର ଭୀମସେନ·····"।

ପାଠକେ ! ବ୍ୟାଘ୍ର ଉପୁଜନିତ ଅସ୍ଥିର ମସ୍ତିଷ୍କପ୍ରସୂତ ପ୍ରଳାପ ଓ ବାତୁଳତାର ଆଉ ଅଧିକ ବିବୃତ୍ତି ନିଷ୍ପ୍ରୟୋଜନ । ଏହି ଉଦ୍ଧୃତାଂଶଯୁକ୍ତ

Digitized by srujanika@gmail.com

ଖାରରସ ଧ୍ୱନସୁକ୍ତ—ପାଗଳ ପ୍ରଳାପ ପ୍ରକୃତରେ ଆମକୁ ଉପ୍ତୁରୁ ଅନ୍ୟ-ମନସ୍କ କର ଦେଉଥିଲ । ପ୍ରଳାପ କର କର ଆମେ ବହୁପଥ ନର୍ବିଘ୍ନରେ ଓ ନର୍ଭୟରେ ଚ୍ଳ ଯାଇଥିଲୁ । ସେହ୍ୱପର ସାଇକେଲ ଘଣ୍ଟି ବଜାଇ ଓ ପାଟି କର କର ଆମେ ଆସି ନର୍ବିଘ୍ନରେ ଆମ ଗ୍ରାମର ପ୍ରବେଶ ଦ୍ୱାର ଦେଇ ବଡ଼ ଗ୍ରାମମୁଣ୍ଡରେ ପହଞ୍ଚଯାଇଛୁ । ରଜପଥ ଚ୍ଳ ଯାଇଛି ଜଙ୍ଗଲ ଦାଢେ ଦାଢେ । ଆମେ ରଜପଥରୁ ଭଙ୍ଗି ହେବୁ ବଡ଼ ଗ୍ରାମଟିରେ ପଶିବୁ । ତେଣିକ ଆମେ ବଞ୍ଚଯିବୁ ଏଥରକ ଲଗି । ମାଡ ଯେଉଁଠି ଆମେ ରଜପଥକୁ ଛାଡ଼ ଗ୍ରାମ ପଥକୁ ଧରବୁ—ଠିକ୍ ସେଇ ଯାଗାରେ ଗୋଟାଏ ବରାଟ ଆମ୍ବ-ତୋଟା, ପାଖକେ ମଶାଣି । ଅଳ୍ପ ପାଖରେ ସଦାବ୍ରତ ରାଧାକାନ୍ତ ମଠ । ଏହ୍ୱ ଆମ୍ବତୋଟା ସହ୍ୱତ ଆମେ ବାଲ୍ୟକାଳରୁ ପରଚତ । ଏଇ ଆମ୍ବ-ତୋଟାକୁ ନେଇ କେତେ ମଧୁର ତକ୍ତ, ଭୟାନକ ସ୍ମୃତ ଆବାଲ୍ୟରୁ ଆମ ମନରେ ବସା ନ ବାନ୍ଧିଛି !! ଏଇ ଆମ୍ବତୋଟା ସାମାନ୍ୟ ନୁହେଁ । ପ୍ରାୟ କୋଡ଼ଏ ଏକର ପର୍ଯ୍ୟନ୍ତ ଏହ୍ୱ ବରାଟ ଆମ୍ବତୋଟା ବ୍ୟାପିଛି । ଆଖ ପାଖ ଦଶଖଣ୍ଡ ଗ୍ରାମରେ ଏହ୍ୱ ଆମ୍ବତୋଟାର ବଭିନ୍ନ କାରଣରୁ ଖ୍ୟାତ ରହ୍ୱଛି ।

ଅମଣାକୁଦ ଗଡ଼ ଗ୍ରାମର ଏହ୍ୱ ଆମ୍ବତୋଟା କଥା କଏ ନ ଜାଣେ ? କାହିଁ କେତେ କାଳର ଆମ୍ବତୋଟା । ଆମର ବାପ କକା କହନ୍ତ—ତାଙ୍କ ପିଲାଦନେ ଏଇ ଅନ୍ଧାରଆ ଅମ୍ବତୋଟା ଭିତରେ ଡାକୁଦଳ ରହୁଥିଲେ । ଦନ ଦ୍ୱି ପ୍ରହରରେ ବ ଏଠି ମଣିଷକୁ ଖୁନ୍ କର ଡକାୟୃତ-ମାନେ ଧନଦ୍ରବ୍ୟ ଲୁଟିକର ନେଉଥିଲେ । କେତେ ମଣିଷଙ୍କ ଚଣ୍ଟି ଏଠି କଟା ହୋଇନାହିଁ ! ଡ଼ାକୁମାନେ କେବଳ ମଣିଷ କାଟନ୍ତ ନାହିଁ । କଟା ମଣିଷକୁ ନେଇ ଆମ୍ବଗଛରେ ଟାଙ୍ଗି ଦେଇ କୁଆଡେ ଫେରର୍ ହୋଇ ଯାଉଥିଲେ । ଝଂମ ଫିରଙ୍ଗୀ ଶାସନରେ ଡ଼କାୟୃତମାନେ ସାବାଡ଼ ହେଲେ । ମାତ୍ର ସେହ୍ୱ ଦନୁ ସେ ତୋଟାଟି ନାମ ବଖ୍ୟାତ ହୋଇଯାଇଛି "ମୁଣ୍ଡହଣା ତୋଟା" ବୋଲି । ଆମ ପିଲାଦନେ ଏ ତୋଟାଟି ଏମିତ ଡକାୟୃତ ବ୍ୟାପାରରେ ବେଶ୍ ନରାପଦ ହୋଇ ଯାଇଥିଲ । ଦନବେଳା କେତେ ଡାଳମାଙ୍କୁଡ଼ୀ ଖେଳଛୁ ଏଠି । କେତେ ରଜ ଦୋଳିଖେଳ ହୋଇଛି

Digitized by srujanika@gmail.com

ଏ ଆମ୍ବତୋଟାରେ । ବାଗୁଡ଼ୁ ଗୁଡ଼ୁ ଖେଳ, ଜଳଛତ୍ର ସଦାବ୍ରତ ରାଧାକାନ୍ତ ମଠକୁ କେତେ ଦୂର ଦେଶରୁ ଦଳ ଦଳ ନାଗା ସନ୍ନ୍ୟାସୀ ଆସନ୍ତି ହାତୀ, ଘୋଡ଼ା ଓ ଓଟ ନେଇ । ଏଇ ଆମ୍ବତୋଟାରେ ସେମାନଙ୍କର ଭିଡ଼ ହୁଏ । ହାତୀ, ଘୋଡ଼ା ଓଟ ଦେଖିବାକୁ ଖାଇବା ପିଇବା ଭୁଲି ଆମେ ସବୁଦିନ ଆସି ଏଠି ଜମା ହୋଇଥାଉଁ । ସେଦିନ ଆଉ ନାହିଁ । ଘୁଷୁରି ନବକଳେବର ରଥ-ଯାତ୍ରାରେ ଓଡ଼ିଶା ପୁଲିସ୍‌ଙ୍କ ହାତ ମାଡ଼ ଖାଇ ସେମାନେ ଆଉ ଆସୁ ନାହାନ୍ତି । ଆଧୁନିକ ଗ୍ରାମ ବାଳକମାନେ ବସ୍, ମଟର, ଟ୍ରକ୍, କାର୍ ଦେଖୁଛନ୍ତି; ମାତ୍ର ହାତୀ, ଘୋଡ଼ା, ଓଟ ଏମାନେ ଦେଖିବେ କାହୁଁ ? ଶୁଣନ୍ତୁ । ଏ ସେଇ ଆମ୍ବତୋଟା । କିନ୍ତୁ ଏ ଆମ୍ବତୋଟା କେବଳ ବାଲ୍ୟ-କାଳର କ୍ରୀଡ଼ାଚପଳ ମଧୁର ସ୍ମୃତିରେ ଜୀବନ୍ତ ନୁହେଁ । ବହୁ ଭୟାନକ ଭୌତିକ ସ୍ମୃତିର ପୀଠସ୍ଥଳୀ । ଏହି ଆମ୍ବତୋଟାର ଠିକ୍ ମଝିକୁ ଅଛନ୍ତି—ଚୁଡ଼ାଖାଇ ଠାକୁରାଣୀ । ଭାରି ପ୍ରତ୍ୟକ୍ଷ ଗ୍ରାମ ଦେବତା । ରାତି ଅଧରେ ହନେ ହନେ ଠାକୁରାଣୀଙ୍କ ଆସ୍ଥାନ ପାଖରୁ ଚୂଡ଼ା କୁଟିବାର ଢିଙ୍କି ଶବ୍ଦ ଶୁଭେ । ହନେ ହନେ ରାତି ଅଧରେ ମାଟି ଘୋଡ଼ାଟିମାନ ଉପରେ ବସି ମଶାଲ ଲଗାଇ ଠାକୁରାଣୀ ଗାଁ ବୁଲିବାହାରନ୍ତି । ଝୁମୁରୁ ଝୁମୁରୁ ନୁପୁର ବଜାଇ ଠାକୁରାଣୀଙ୍କ ସାଙ୍ଗରେ ତାଙ୍କର ସହ ସଙ୍ଗାତ କେତେ ଚଣ୍ଡୀ ଗୁମଣ୍ଡେଇ ଠୁକୁରୁ ଠୁକୁରୁ ହୋଇ ବୁଲୁଥାନ୍ତି । ପାଖ ମଶାଣିରେ ମୁର୍ଦ୍ଦାର ପଡ଼ିଲେ ଏଇ ତୋଟାରେ ଅନୁଦ୍ଧୁନ୍ତ ଆଲୁଅ ଦିଶେ । ଗୁମଣ୍ଡାମାନେ ମାଶାଣିକୁ ଯା'ନ୍ତି ମୁର୍ଦ୍ଦାର ଗନ୍ଧରେ ଉଦଭଳା ହୋଇ । କେବଳ ଏମାନେ ନୁହଁନ୍ତି; ଏଇ ତୋଟାରେ ବି ଅଛି ଗୋଟିଏ ମାଙ୍କୁଡ଼ୀ ଭୂତ । ରାତିଅଧରେ ଡାଳକୁ ଡାଳ ମାଙ୍କୁଡ଼ୀ ଭଳି ଡିଏଁ । ଆହୁରି ମଧ୍ୟ ଅଛି ଗୋଟିଏ ମାଉଁସା ଭୂତ । ମାଉଁସ ପିଣ୍ଡୁଳା ଭଳି ଗଡ଼ି ଗଡ଼ି ଆସି ପିଠିରେ ଲଦି ହୋଇପଡ଼େ । କେତେ ଲୋକ ଏଠି ଅବେଳରେ ଭେଟଣା ହୋଇ ରକ୍ତ ବାନ୍ତିକରି ନ ମରିଛନ୍ତି ! ଆମ ଗାଁ ମୂଷା ପଧାନ କେମିତି ମଲା ? ରାତି ଅଧରେ ଗ୍ରାମ ସେନାପତି ପୋଖରୀରୁ ମାଛ ମାରି—ଗୋଟିଏ ମାଛ ଧରି ଆସୁଥିଲା, ଧଇଲେ ତାକୁ ଚଣ୍ଡୀମାନେ ଏଠି । ବୁଲି ବାଉଗ କେତେ ଯୁଆନ୍ ଟାଏ ହୋଇନଥିଲା । ସେ ପରି ଏଇଠି ଭେଟଣା ହୋଇ ରକ୍ତବାନ୍ତି କରି ମଲା ! ନାଥ ଓଝା ।

Digitized by srujanika@gmail.com

ବୁଢ଼ାକୁ ତ ଏଇଠି ଭୂମ୍ପୁଣ୍ଡାମାନେ ଗନ୍ତ ଅଧରେ ବେଢ଼ି ଖାଇଦେଲେ । ବଡବଡ ବୁଢ଼ା, ଚୂଡ଼ା ଦହି ଖାଇ ଏକୁଟିଆ ଫେରୁଥିଲା କାନରେ ଚୂଡ଼ା ଦହି ବାନ୍ଧି । ଏଇ ଆମ୍ବ ତୋଟା—ଭାରି ଭୟାନକ ଥାନ ଏ । ଖରାଦିନେ ଉଦୁଉଦିଆ ଦିପ୍ରହରରେ ଭ ଏଠି ଖଣ୍ଡି ଆଭୂତ ବାହାରେ--ଧୂଳି ଉଡ଼ାଏ । ବଡରେ କେହି ଏ ତୋଟା ଭିତରକୁ ଡର କରି ପଶନ୍ତି ନାହିଁ ।

ସେହି ତୋଟା ପାଖକୁ ଆସିବା ମାତ୍ରେ ଆମେ ଦୁହେଁ ହଠାତ୍ ସ୍ତମ୍ଭିତ ହୋଇ ଠିଆ ହୋଇଗଲୁ । ତୋଟାଟା ଅତିକ୍ରମ କରିବାକୁ ଅନ୍ତତଃ ଦଶମିନଟ୍ ଲାଗିବ । ତା' ପରେ ପଶିଯିବୁ ସେଇ ଗାଁଟା ଭିତରେ । ବାଘ ଭୟରୁ ପାରହୋଇ ଆସିଲୁ । ବାସ୍ତବତାର ଉନ୍ମାଦନାରେ ଓ ସ୍ନାୟୁଗୁଡ଼ିକର ତୀବ୍ର ଖିଚସନ୍ତ ଉତ୍ତେଜନାରେ ଦେହରୁ ଗମ୍ ଗମ୍ ଝାଳ ବହିଯାଉଛି । ହଠାତ୍ ଆଗରେ ସେହି ଭୟଙ୍କର ଆମ୍ବତୋଟା । ଆଗରୁ ଏ ତୋଟା କଥା ମନକୁ ଆସିନାହିଁ । ସେତେବେଳର ବାଘ ଭୟ ଆକ୍ରାନ୍ତ ମନରେ ଏ ତୋଟାର ଭୟଙ୍କର ସ୍ମୃତି ଜାଗିନଥିଲା । ବର୍ତ୍ତମାନ ବାଘ ନାହିଁ । ମାତ୍ର ଭୂତମାନେ କୁଆଡ଼େ ଯିବେ ? ବାଘରାଜ୍ୟ ପାରହୋଇ ଆମେ ପହଞ୍ଚିଛୁ ଭୂତ ରାଜ୍ୟରେ । ହଠାତ୍ ସ୍ତମ୍ଭିତ ହୋଇ ଠିଆ ଠିଆ ଛାତିରେ ଦମ୍ଭ ସଞ୍ଚାର କଲୁ । ଏକାଦଶୀ ଚନ୍ଦ୍ର କେତେବେଳୁ ବୁଡ଼ି ଗଲେଣି । ମେଘ ଅନ୍ଧାର ରାତି । ମୁହଁକୁ ମୁହଁ ଦିଶୁନାହିଁ । କିନ୍ତୁ ଆମ୍ବ-ତୋଟା ଭିତରେ ଯେଉଁ ଅନ୍ଧକାର, ତା'ର ରୂପ ଆଉ ପ୍ରକାରେ । କିଏ କହେ ଅନ୍ଧାରର ରୂପ ନାହିଁ ? —ରୂପ କେବଳ ଅଛି ଆଲୋକର ? ହୋଇପାରେ, ଆଲୋକର ରୂପ ବର୍ଣ୍ଣାଢ଼୍ୟତାରେ ଉଜ୍ଜ୍ୱଳ ସ୍ପଷ୍ଟ । ମାତ୍ର ଅନ୍ଧାରର ରୂପ ବର୍ଣ୍ଣହୀନ । ସେ ରୂପ ଅବର୍ଣ୍ଣନୀୟ ରୂପ । ଆଲୋକର ରୂପ କେବଳ ଧରାପଡ଼େ ଆଖିରେ । ଆଖିର ମାଧ୍ୟମରେ ଆଲୋକ ଏକ ନିଃସନ୍ଦେହ ସୀମିତ ରୂପାଲୋକର ଅସ୍ତିତ୍ୱକୁ ମନ ଭିତରକୁ ଠେଲିଦିଏ । ମନ ସେଠାରେ ରୂପକୁ ପ୍ରତ୍ୟକ୍ଷ କରିବାରେ ସ୍ୱାଧୀନ ନୁହେଁ—ଆଖି ଇନ୍ଦ୍ରିୟଶକ୍ତିର ଅଧୀନ । ମାତ୍ର ଅନ୍ଧକାର ଆଖି ଆଗରେ କଳା ପରଦା ପକାଇ ମନକୁ ଛାଡ଼ିଦିଏ ଅବାଧ ଭାବରେ— ସ୍ୱାଧୀନ ଭାବରେ—ତାର ରୂପବୋଧକୁ ପ୍ରତ୍ୟକ୍ଷ କରିବା ଲାଗି । ମନ ସେଠାରେ ଅବାଧରେ

Digitized by srujanika@gmail.com

ଅନ୍ଧାରକୁ ପ୍ରତ୍ୟକ୍ଷ କରେ । ଆଖି ବାଧା ଦିଏ ନାହିଁ । ଦେଖାଇ ଦିଏ ନାହିଁ ।

ଆପଣ ବୁଝିପାରିବେ ନାହିଁ । ମୁଁ ସେଦିନ ଅନ୍ଧାରର ରୂପକୁ ଦେଖିପାରିଲି । ଆପଣ ବିଶ୍ୱାସ କରିପାରିବେ ନାହିଁ—ଖାଲି ରୂପ ନୁହେଁ—ଅନ୍ଧାରର ଦେହ ମଧ୍ୟ ଅଛି । ମୁଁ ସେଦିନ ସେଇ ଆତ୍ମଘୋଟାଟା ଭିତରେ ଅନ୍ଧାରର ରୂପକୁ ପ୍ରତ୍ୟକ୍ଷ କରିଛି । ଅନ୍ଧାରର ଦେହକୁ ସ୍ପର୍ଶକରିଛି । କି ନିବିଡ଼, କି ନିରନ୍ଧ୍ର, ନିଃଶ୍ୱାସରୋଧ, କି ନୈରାଶ୍ୟଜନକ, କି ଅନ୍ତଃସ୍ପର୍ଶୀ ହୀନ, କାଳ କରାଳ ଅନନ୍ତ ରହସ୍ୟମୟ ଶ୍ୱାସରୋଧୀ ସେ ଅନ୍ଧକାରର ରୂପ ଆଉ ସ୍ପର୍ଶ ! ଅବର୍ଣ୍ଣନୀୟ ତାର ରୂପ—ଅବର୍ଣ୍ଣନୀୟ ତାର ରୂପ ଓ ସ୍ପର୍ଶର ମହିମା !

ଏଇ ଭଳି ଅନ୍ଧକାର ମଧ୍ୟରେ ଥାଇ ଶ୍ରାନ୍ତ କ୍ଳାନ୍ତ, ଘର୍ମାକ୍ତ ଖିନ୍ନଦେହ ଦୁଇଟି ଯୁବକ କିଂ କର୍ତ୍ତବ୍ୟବିମୂଢ଼ ଭାବରେ ନୀରବରେ ପରସ୍ପରକୁ ଅପେକ୍ଷା କରିବାକୁ ଲାଗିଲେ । ବର୍ତ୍ତମାନ ଉପାୟ କ'ଣ ? ଏଇ ଅନ୍ଧଘୋଟାର ଏଇ ଅନ୍ଧକାର ଭିତରେ କଣ ପଶି ହେବ ? ···କିଛିକ୍ଷଣ ପରେ ମୁଁ ଖୁବ୍ ଧୀର ଗଳାରେ ପଚାରିଲି, ଭାଇନା ! କଣ କରିବା ? ଯିବା କେମିତି ?

କ୍ଷୀଣ କଣ୍ଠରେ ପ୍ରାଣହୀନ ଅସହାୟ ଉତ୍ତର ଆସିଲା—କ'ଣ କରିବା ?

ପୁଣି କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ନୀରବତା ।

ତା'ପରେ ସେଇ ଘନ ବିହ୍ୱଳତା ମଧ୍ୟରେ ମୁଁ ହଠାତ୍ ଉତ୍ତେଜିତ ହୋଇ ଉଠି କହିଲି, ଗୋଟେ କଥା କରିବା ଭାଇନା !

"କ'ଣ କରିବା" ? ହାୟ ! ଗୋଟିଏ ଡାକ୍ତରର ପ୍ରଥମଥର ଲାଗି ଗୋଟିଏ ରୋଗୀ ନିକଟରେ ଅସହାୟ ଆତ୍ମସମର୍ପଣ ! ମୁଁ କହିଲି, ବଡ଼ ପାଟିରେ ଗୋଟିଏ ସ୍ତବ ଗାଇବା । ହରିନାମ ଭଜନ କରି ଦ୍ରୁତ ପଦକ୍ଷେପରେ ପାର ହୋଇଯିବା ଏଇ କୁତ୍ସିତ ଅନ୍ଧକାର, ଏଇ ଭୌତିକ

Digitized by srujanika@gmail.com

ଆତ୍ମତୋଷାକୁ । ହରିନାମ ଶୁଣିଲେ ଭୂତମାନେ ଭୟ କରନ୍ତି । ଚଳୁଥ ନାମ ଭଜନ । ଢୋଲ ବାଇ—"ହରେକୃଷ୍ଣ ହରେ ରାମ, ରାମ ରାମ ହରେ ହରେ ।" "ହରେ-ରାମ ହରେ-ରାମ କୃଷ୍ଣ କୃଷ୍ଣ ହରେ ହରେ !" ନରି ଭାଇନା ବ ମୋ ସ୍ୱରସଙ୍ଗେ ସ୍ୱର ମିଶାଇ ବଡ଼ପାଟିରେ ତାଳ ଧରିଲେ । ମନ ଭିତରର ଭୟକୁ ଚାପି ରଖିବା ପାଇଁ ବଡ଼ ପାଟିରେ ବୀରଭାବପୂର୍ଣ୍ଣ ଭକ୍ତି ଚିତ୍କାର ହିଁ ଶ୍ରେୟପନ୍ଥା । ହରିନାମ ବା ଈଶ୍ୱର ପ୍ରାର୍ଥନାଟାକୁ ବି ଭକ୍ତିରସର ଛନ୍ଦରେ କୋମଳ ଓ ବିନମ୍ର ଭାବେ ନ ଗାଇ ବୀର ରସର ଛନ୍ଦରେ ଗାଇ ଗାଇ ପଶିଗଲୁ ଭୂତ, ପ୍ରେତ, ଚଣ୍ଡୀ, ବ୍ରହ୍ମଦୈତ୍ୟପୂର୍ଣ୍ଣ ଭୟଙ୍କର ଅନ୍ଧକାରର ସମୁଦ୍ର ଭିତରକୁ······।

ଆତ୍ମତୋଷାର, ମଝିରେ ହୋଇ ଗଲୁଣି । ଗାଇ ଚାଲିଛୁ ପାଟିକରି ବୀର ରସରେ ଉଦ୍‌ବୋଧନା ମୂଳକ ଧ୍ୱନି ତୋଳି—

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ
ହରେ ହରେ—
ହରେ ରାମ ହରେ ରାମ ରାମ ରାମ
ହରେ ହରେ ।

ନାମ ଭଜନ ହେଉଛି ସତ୍ୟ । ମାତ୍ର ତାହା ବୀର ରସରେ ସଙ୍ଗୀତ । ମୁଁ ପଦେକୁ ସେ ପଦେ । ସତେ ବା ଦୁଇ ବୀର ପୁରୁଷଙ୍କ ମଧ୍ୟରେ ବୀରତ୍ୱ-ପୂର୍ଣ୍ଣ ଯୁଦ୍ଧଂ ଦେହି ଡାକର ଉକ୍ତିପ୍ରତ୍ୟୁକ୍ତି ।

କିନ୍ତୁ ତୋଟା ଭିତରେ ଯେତିକି ଯେତିକି ପଶୁଚୁ—ଅନ୍ଧାର ସେତିକି ସେତିକି ଆମ ଦେହରେ ଗୁଡ଼ାଇ ଧରି ଚାଲିଛି । ଅନ୍ଧାରରେ କେହି କାହାକୁ ଦେଖିପାରୁନୁ । ମାତ୍ର ପରସ୍ପରର ଉଚ୍ଚସ୍ୱରରେ ଚିତ୍କାରିତ ବୀର ରସର ନାମ ଭଜନରେ ଆମେ ବେଶ୍ ଦୃଢ଼ଥିଲୁ । ଅତି ନିଷ୍ଠା ଭାବରେ ଅଷ୍ଟ ପ୍ରହରୀର ନାମ ସଙ୍କୀର୍ତ୍ତନିଆଙ୍କ ପରି ଆମେ "ନାମ" ଛାଡ଼ୁନୁ । ମାତ୍ର ହଠାତ୍ କେତେବେଳେ ଭୟର ଜଡ଼ତା ଆମର କଣ୍ଠକୁ ଜଡ଼ାଇ ଧରିଛି । ସମ୍ପୂର୍ଣ୍ଣ ଅଚେତନ ଭାବରେ ଆମେ ମୂକହୋଇ ଯାଇଛୁ । ଅଥଚ ସେହି ନିବିଡ଼

Digitized by srujanika@gmail.com

ନିସ୍ତବ୍ଧ ଭୟଚକିତ ଆତ୍ମଚେତାଟାର ଅନ୍ଧକାର ଭିତରେ ଆମେ ସେକଥା ଭୁଲି ମଧ୍ୟ ଯାଇଥୁ ଯେ ଆମକୁ ଟାଟିକର ନାମ ଭଜନ କରିବାକୁ ହେବ ଶୀତରମର ଧ୍ୱନି ହେଇ । କ୍ରମେ କ୍ରମେ ଆମେ ନିସ୍ତବ୍ଧ ହୋଇଗଲୁ ଗ୍ରୁପ ଗୁପ ସମ୍ପୂର୍ଣ୍ଣ ଅଜାଣତରେ । ଶେଷକୁ ଶଙ୍କ ବିଷୟରେ ଅଚେତନ ହୋଇ —ଏହି ନିସ୍ତବ୍ଧତା ଉପରେହିଁ ଆମେ ଆମର ସମସ୍ତ ଚେତନାକୁ ଠୁଳ କଲୁ । ଏହି ନିବିଡ଼ ନିସ୍ତବ୍ଧତା ସହିତ ଆମେ ଏତେ ଏକାତ୍ମୀଭୂତ ହୋଇ ପଡ଼ିଲୁ ଯେ ଆମର କ୍ଷୀଣ ନିଶ୍ୱାସ ପ୍ରଶ୍ୱାସ ଟିକିଟିକୁ ମଧ୍ୟ ଆମେ ଯଥା ସମ୍ଭବ ସଂଯତ କଲୁ । ଆମର ମନେହେଲା—ଶବ୍ଦ ନୁହଁ—କୋଳାହଳ ନୁହେଁ—କେବଳ ଏହି ନିବିଡ଼ ନିରବଚ୍ଛିନ୍ନ ନିସ୍ତବ୍ଧତା ହିଁ ଏ ପରି-ସ୍ଥିତିରେ ବେଶି ସ୍ୱାଭାବିକ ଓ ବେଶି କାମ୍ୟ । ଆଉ ହୁଏତ ଅଳ୍ପବାଟ ଅଛି । ଏହି ନୀରବ ନିସ୍ତବ୍ଧତା ମଧ୍ୟରେ ବି ନିରାପଦରେ କାଟି ଦିଆଯାଇ ପାରେ ଏହି ଅନ୍ଧକାରର ଭୀଷଣତା । ଅତିକ୍ରମ କରାଯାଇପାରେ ଏହି ଭୟଙ୍କର ଭୂତରାଜ୍ୟ ।

ଦେହର ଲୋମସବୁ ଠାକୁରି ରହିଛନ୍ତି । ଅଙ୍ଗପ୍ରତ୍ୟଙ୍ଗ ସବୁ କାଠପରି ସିଧା ଓ ଟାଣ ହୋଇଯାଇଛନ୍ତି । କାନ ଦୁଇଟା ଖଡ଼ା ହୋଇ ଅପେକ୍ଷା କରିଛନ୍ତି । ସାଇକେଲ ଗଡ଼ାଇ ଆମେ ନୀରବରେ ସନ୍ତର୍ପଣକରି ସ୍ଥିରତା ଭିତରେ ଅନ୍ଧାରକୁ ଭେଦି ଭେଦି ଚାଲିଛୁ । ଏହି ସମୟରେ ଏତେଟିକେ ଛୁଞ୍ଚି ଭୂମି ଉପରେ ପଡ଼ିଲେ ବି ଯେଉଁ ଶବ୍ଦ ହେବ, ସେତିକ ମଧ୍ୟ ହୋଇ ଉଠିବ ଆମ ପାଖରେ ଅତି ମାରାତ୍ମକ—କ୍ଷତିକାରକ । ···ହଠାତ୍—ହଠାତ୍···ହ···ଠା···ତ୍···

ହଠାତ୍ ଘୁଙ୍ଗୁର ଧ୍ୱନି ଶୁଣାଗଲେ । ସମଗ୍ର ଦେହରେ ଗୋଟିଏ କାଲୁଆ ଶିହରଣ ଖେଳିଗଲା । ମାତ୍ର ସେହି ନିସ୍ତବ୍ଧତା ଭଙ୍ଗକାରୀ ଘୁଙ୍ଗୁର ଧ୍ୱନିକୁ ଉପେକ୍ଷା କରିବାକୁ ଚେଷ୍ଟାକରି ଆଗକୁ ଆମେ ମାଡ଼ି-ଚାଲିଲୁ । ବର୍ତ୍ତମାନ କିନ୍ତୁ ଘୁଙ୍ଗୁର ଧ୍ୱନି ଗୋଟିଏ ଆଉ ଶୁଭିଲା ନାହିଁ । ସମଗ୍ର ଚୌହଟା ଭିତରେ ତାହା ବ୍ୟାପକ ଓ ନିରବଚ୍ଛିନ୍ନ ଭାବେ ଶୁଣାଗଲା । ହଲକାଏ ରକ୍ତ ଛାତିକୁ ଧକ୍କା ମାରି ପୁଣି ବାଉନ୍ସ ଶିରା ଭିତରେ ସଂଚରିଗଲା ।······କିଛିକ୍ଷଣ ପୁଣି ନିସ୍ତବ୍ଧତା । ଆଉ ଘୁଙ୍ଗୁର ଧ୍ୱନି

Digitized by srujanika@gmail.com

ଶୁଭିଲା ନାହିଁ । ···କିଛିକ୍ଷଣ ପରେ ପୁଣି ଶୁଭିଲା ଘୁଙ୍ଗୁରର ଧ୍ୱନି । କିଏ ସତେ କିଆସୁଛି, ଏଇ ଅନ୍ଧାର ପରି ଘନ ନିବିଡ଼ ତାର ରୂପ – କିନ୍ତୁ ଆଦର୍ଶନୀୟ ଅବର୍ଣ୍ଣନୀୟ । କିଏ ନିଷ୍ଠୁର ଆସୁଛି, ଝମ ଝମ କରି ପଦର ନୂପୁର ବଜାଇ ତା ପରେ ଛପି ଯାଉଛି—ଅଟକି ଯାଉଛି– ଫେର୍ ଆସୁଛି—କୁଦି କୁଦି –ଖେଳ ଖେଳ – ମେଞ୍ଚା ମେଞ୍ଚା—ଘନୀଭୂତ ଅନ୍ଧକାରର ମାଂସପେଶୀ ତା'ର ଫୁଲ ଉଠି ଦିଶିଯାଉଛି । ଆଉ ଧକ୍କାଏ ମାରିଲା ଗୁହିକି ହୃତ୍ପିଣ୍ଡର ରକ୍ତସ୍ରୋତ । ପୁଣି ସବୁ ଶିରା ପ୍ରଶିରାରେ ଓ ଧମନୀରେ ସଂଚରିଗଲା ସେଇ କ୍ଷମଣୀତଳ ଅଥଚ ତଡ଼ିତ୍ ଦ୍ରବୀଭୂ –ଭୟ ଆଶଙ୍କା ଆଉ ଉପସ୍ଥିତି ଭୌତିକ ବିଭୀଷିକାର ।

ଅସଂଖ୍ୟ ତେଉଭଳି ରକ୍ତର ତେଉ ହୃଦୟର ବେଳାଭୂମିକୁ ଧକ୍କା ଦିଏ ପ୍ରଚଣ୍ଡ—ତା'ପରେ ବିଞ୍ଚହୋଇ—ଖେଳେଇ ହୋଇ—ଶାନ୍ତ ହୋଇ ନଇଁଯାଇ ବହିଯାଏ । ଭୟ ନାହିଁ--ଆମେ ଡରୁନୁ । ଗୁହ ଆମର ଫାଟି ଯାଉନି, ରକ୍ତବାନ୍ତି ହୋଉନି, ପଡ଼ି ଯାଉନୁ, ଚେତା ହରାଇ ନାହୁଁ— ଚମକୁଛୁ—କିନ୍ତୁ ଗୁଳୁଛୁ, ଥରୁଛୁ ପୁଣି ଦୃଢ଼ହୋଇ ଯାଉଛୁ । କାହିଁ ? କିଏ ଆସୁଛି ? ଆଖି ଆମର ବିସ୍ଫୁତ ହୋଇ ଯାଉଛନ୍ତି—ଆଖିମାନେ ସାହସ ବାନ୍ଧୁଛନ୍ତି । କିଏ ହେ ଶବ୍ଦକାୟ ଅଶରୀରୀ ?? ଶରୀର ଧାରଣ କର । ଧ୍ୱନି ଶୁଣି ଚମକୁଛୁ, ପଡ଼ ଯାଉନୁ । ରୂପ ଦେଖି ଚମକିବୁ, କିନ୍ତୁ ପଡ଼ିଯିବୁନି । ଆମେ ଶୁଣିଲୁ , ଏଥର ଦେଖିବୁ । ଦେଖା ଦିଅ ହେ ଅଶରୀରୀ ରୂପହୀନ ପ୍ରେତାତ୍ମା ! ରୂପହୀନ ପ୍ରେତାତ୍ମା ଏବେ ରୂପ ଧାରଣ କରୁ । ଜୀବାତ୍ମାର ଆଖିର ଧବଳେଉ ଭ୍ରମର ପ୍ରେତାତ୍ମାର ପ୍ରେତାୟିତ ଆଖିର ରୋମାଞ୍ଚକର ରହସ୍ୟ ।

ଏଥର ଆଉ ଗୋଟାଏ ନୂଆ ଶବ୍ଦ ଶୁଭିଲା । ନିରବଚ୍ଛିନ୍ନ ଘୁଙ୍ଗୁର ଧ୍ୱନି ସହିତ ହଠାତ୍ କୋହିଏ ସଜୋରେ ନିଃଶ୍ୱାସ ନେବାର ଓ ଛାଡ଼ିବାର ଶବ୍ଦ । ସତେ ବା କିଏ ବିରାଟ ଦୁଇ ନାକପୁଡ଼ା ମେଲାଇ ବାୟୁମଣ୍ଡଳରୁ ସମସ୍ତ ବାୟୁ ଶୋଷିନେଲା ଆଉ ସଙ୍ଗେ ସଙ୍ଗେ ପୁଣି ଛାଡ଼ିଦେଲା·····ପୁଣି ଝଲକାଏ ରକ୍ତ ଗୁହିକୁ ଧକ୍କା ଦେଲା । ସତେକି ଏଥର ଗୁହ ଫାଟିଯିବ ! !

Digitized by srujanika@gmail.com

ଘୁଷ୍ଟ ତଥାପି ଫାଟିଗଲା ନାହିଁ। କିନ୍ତୁ ମୁହଁଟାରେ ଜମି ଗଲାଣି ଗୁଡ଼ାଏ ରକ୍ତ । କାନମୁଣ୍ଡା ଟଣ ଟଣ ହେଉଛି । ଦେହରେ କିଏ ସତେକି କାଲୁଆ ହାତ ବୁଲାଇ ଥକ୍କାଇଦେଲା ।

କାହିଁ ? କିଏ କେଉଁଠି ? ଏତେ ଶବ୍ଦରେ ଓ ଏତେ ଉପଦ୍ରବରେ ବି ଆମେ ନିଜ ଆଡ଼ୁ ନିସ୍ତବ୍ଧତା ଭଙ୍ଗ କରିନାହୁଁ । ଆମେ ସେତେବେଳେ ମଧ୍ୟ ସଜାଗ ଯେ—ବାହାରୁ ଯେତେ ଯାହା ଭୌତିକ ଶବ୍ଦ, ରୂପ, ଗନ୍ଧ ଓ ସ୍ପର୍ଶ ଆମ କାନରେ, ଆଖିରେ, ନାକରେ ଓ ଦେହରେ ଲାଗିଲେ ବି ଆମେ ଦୁହେଁ ସେଥିରେ ହଡ଼ବଡ଼େଇ ଯିବୁନାହିଁ । ଚିତ୍କାର କରି ଉଠିବୁନାହିଁ । ଭୀତ ଓ ତ୍ରସ୍ତ ହୋଇ ଦୁହେଁ ପରସ୍ପରକୁ ଘୁଡ଼ି ଏଇ କରାଳ ଅନ୍ଧାର ଭିତରେ କଲବଲିଆ ହୋଇ ଏଣେ ତେଣେ ଦୌଡ଼ି ଶେଷରେ ଭୂତଙ୍କ କବଳରେ ପଡ଼ିଯିବୁନାହିଁ । ଆମେ ସେମାନଙ୍କୁ ଦେଖିବୁ--ଭଲକରିଦେଖିବୁ । ବୁଝିବୁ । ଦରକାର ପଡ଼ିଲେ ସେମାନଙ୍କ ସଙ୍ଗେ ମୁକାବିଲା କରିବୁ । କଥା-ବାର୍ତ୍ତା ହେବୁ । ସେ ସବୁ ଭୌତିକ ଅଲୌକିକ ରହସ୍ୟ ଅନ୍ଧକାର ଭିତରୁ ବହୁ ତଥ୍ୟ ଆବିଷ୍କାର କରିବୁ । ସେମାନଙ୍କର କିଛି ସମସ୍ୟା ମଧ୍ୟ ଆବଶ୍ୟକ ହେଲେ ସମାଧାନ କରିବୁ ।

ଦୁହେଁଯାକ ଏଇ ସିଦ୍ଧାନ୍ତ ନେଇ ଚୂପ୍ ଚାପ୍ ସେହି ଅନ୍ଧାର ଭିତରେ ଚାଲି ଥାଉଁ । ଘୋର ଅନ୍ଧାର ଭିତରେ କିଛି ଦିଶୁନାହିଁ । ଆମେ ମଧ୍ୟ ପରସ୍ପରକୁ ଦେଖିପାରୁ ନଥାଉ । ମାତ୍ର ଲଗା ଲଗି ହୋଇ ଚାଲୁଥାଉ । ଆମ ମଝିରେ ମୋର ସାଇକେଲଟି ଗଡ଼ୁଛି । ନିର ଭାଇନାଙ୍କ ଡାହାଣ କଡ଼େ ତାଙ୍କ ସାଇକେଲଟି ଗଡ଼ିଚାଲିଛି । ସାଇକେଲ ଦୁଇଟି ମଧ୍ୟ କିଛି ଶବ୍ଦ କରୁନଥାନ୍ତି । ଘୁଏଁ—ଘୁଏଁ ସବୁ ଯେପରି ନିସ୍ତବ୍ଧ ହୋଇ ଯାଇଛି । ମନ ଭିତରେ ଉତ୍କଣ୍ଠା, ଉଦ୍‌ବେଗ, ଓ ଆଶଙ୍କାରେ ଆଉଟି ହେଉଥାନ୍ତି । ଏତେ ଶୂନ୍ ଶାନ୍ ଲାଗୁଥାଏ ଯେ ମୋର କିଛିକ୍ଷଣ ଉତ୍ତାରୁ ମନେହେଲା ଆଚ୍ଛା – ଆମେ ପ୍ରକୃତରେ ଚାଲିଛୁ ତ ? ଆମେ ଜାଗ୍ରତ ଅଛୁ ନା ଶୋଇ ଶୋଇ ଏମିତି ଗୋଟାଏ ଦୁଃସ୍ୱପ୍ନ ଦେଖୁଛୁ ? କିମ୍ବା ଆମ ଭିତରେ ଭୂତ ଡାହାଣୀମାନେ ପଶିଯାଇ ଆମର ଚେତନା ଲୋପ କରି ଦେଲେଣି କି ? ଆଚ୍ଛା···ଆଚ୍ଛା ଆମେ ପ୍ରକୃତରେ ବଞ୍ଚିଛୁ ତ ?

Digitized by srujanika@gmail.com

ହଠାତ୍ ମୋର ଅଜାଣତରେ ସାଇକେଲ୍ ପାଡଲ୍‌ଟା ଜୋରରେ ମୋ ଗୋଡ ପେଣ୍ଡାର ହାଡ଼ରେ ଖୁବ ଜୋରରେ ବାଡେଇ ହୋଇଗଲା । ସଦ୍ୟଃସ୍ପୃଷ୍ଟ ଏକ ଦୈହିକ ଆଘାତର ଯନ୍ତ୍ରଣାରେ ମୁଁ ଚାଟିକରି ଉଠିଲି—ଆଃ ଆଃ !!

ହଠାତ୍ ନରି ଭାଇନା ମୋର ଚିତ୍କାରର ପ୍ରତିଧ୍ୱନି କରି ଉଠିଲେ—ଅଚର୍ଚ୍ଛ ହୋଇ, ହୋ ଓ ଓ ଓ ଓ ଓ ଓ ଓ... ...

ତାଙ୍କ ଚିତ୍କାରଟା ଏତେ ଭୌତିକ ଖିନ୍ତି—ହେଲା ଥିଲା ଯେ ମୁଁ ମଧ୍ୟ ଭୟରେ ଚିତ୍କାର କରି ଉଠିଲି—ଏବଂ ଦୌଡ଼ିଲି ।

ହୋ ଓ ଓ ଓ ଓ ଓ ଓ ଓ... ...

ନରି ଭାଇନା ପୁଣି ମରଣ ଭୟ-ସୁଲଭ ଚିତ୍କାର କଲେ—

ହୋ ଓ ଓ ଓ ଓ

ମୁଁ—ହୋ ଓ ଓ ଓ

ନରି ଭାଇନା—ହୋ ଓ ଓ ଓ ଓ

ସାଇକେଲ ସେଠି ଫିଙ୍ଗିଦେଇ ଆମେ ଅଚର୍ଚ୍ଛ କଲିକଲିଆରେ ଆଗକୁ ଦୌଡ଼ି ଲାଗିଲୁ ଏକ ଅର୍ଦ୍ଧଚେତନ କ୍ଷିପ୍ରତାରେ । ତା'ପରେ—ତା ପରେ—ଆମେ ଯାଇ ନୂଆ ଗାଁ ଭିତରେ ପୁଣି ସେଇ ଗ୍ରାମ ମୁଣ୍ଡରେ ଇ ଦୁଲ ଦାଲ୍ ତଳେ ପଡ଼ିଗଲୁ । ଆମର ଚେତା ବୁଡିଗଲା ।

ବଡ଼ ପାହାନ୍ତି ଆସିଥିଲା । ବୋଧେ ଅଧଘଣ୍ଟାକ ପରେ ପାହାନ୍ତ ଶୀତଳ ଲାଗି ପ୍ରଥମେ ମୋର ଚେତା ଫେରି ଆସିଲା । ମୁଁ ଆଖି ଖୋଲି ଚାହିଁଲି—ଫର୍ଚ୍ଚା ହୋଇ ଆସିଲାଣି । ନରି ଭାଇନା—ବୃଦ୍ଧିକାଠ ଲମ୍ବାଇ କାଦୁଅ ଲଟପଟ ହୋଇ ପଡ଼ିଛନ୍ତି ।

ମୁଁ ତାଙ୍କୁ ଉଠାଇଲି । ସେ ମଧ୍ୟ ସଙ୍ଗେ ସଙ୍ଗେ ଉଠି ପଡ଼ିଲେ ଓ ନିଜ ନାଡ଼ୀକୁ ଦୁଇମିନିଟ ଚିପି କଣ ବାରିଲେ । ତା'ପରେ ମୋ ମୁହଁକୁ ଚାହିଁଲେ ଓ କହିଲେ—ଦେଖି ତୋ' ନାଡ଼ୀ ।

Digitized by srujanika@gmail.com

ମୁଁ କହିଲି--ଠିକ୍ ଅଛି । ନାଡ଼ୀ ଠିକ୍ଅଛି । ତୁମକୁ କପରି ଲାଗୁଛି ?

ସେ କହିଲେ—ଭଲ ଲାଗୁଛି । ଉଃ—କି ଭୟଙ୍କର !!

ମୁଁ କହିଲି—ଭୟଙ୍କର ସତ, ମାତ୍ର ଚମତ୍କାର ମଧ୍ୟ । ଆଚ୍ଛା—ତୁମେ ସେ ଚୋଟା ଅନ୍ଧାର ଭିତରେ କିଛି ଶୁଣିଛ ?

ସେ କହିଲେ, ହଁ ଶୁଣିଛି—ଘୁଙ୍ଗୁର ଧ୍ୱନି । ନିଶ୍ୱାସ ପ୍ରଶ୍ୱାସର ଶବ୍ଦ—ଡାଳ ଭାଙ୍ଗିଯିବାର ମଟ ମଟ ଶବ୍ଦ, କିନ୍ତୁ ତୁ କିଛି ଦେଖିଛୁ ଭଲ ?

ମୁଁ ନିରାଶ ହୋଇ କହିଲି, ଦୃଶ୍ୟ ? ନାଇଁ, ମୁଁ ତ କିଛି ଦେଖିନି, ଖାଲି ଶୁଣିଛି—ତୁମେ ଯାହା ଶୁଣିଛ । କିନ୍ତୁ ତୁମେ କ'ଣ ଦେଖିଲ ? କ'ଣ ଦେଖିଲ ଭାଇନା ?

ନରି ଭାଇନା ବିଜୟ ଉଲ୍ଲାସରେ କହିଲେ, ଯା ! ତୁ ତା ହେଲେ ଛେନାଗୁଡ଼ ଜାଣିଲୁ । ମୁଁ ଜାଣେ ତୁ ଛେରୁଆ । ଶବ୍ଦ ଶୁଣି ଡରରେ ଆଖି ବୁଜି ଦେଇଥିବୁ । ଦେଖିବୁ ଆଉ କପରି ?

ହତାଶ ହୋଇ କରୁଣ ଭାବରେ ପଚାରିଲି, କ'ଣ ଦେଖିଲ ଭାଇନା ?.

କ'ଣ ଦେଖିଲି ? ଦେଖିଲି ଭୂତ । ମୋ ପାଖେ ପାଖେ ସଡ଼ ସଡ଼ ହୋଇ ଘୁଷୁରି ଭଳିଆ ଚାଲିଗଲା ଯେ ! ସଁ ସଁ ହୋଇ ଦଉଡ଼ିଲା ସେଇ ମଶାଣି ଆଡ଼କୁ ।

ସତେ ???

ପାଠକେ ! ଆପଣ କଣ ମୋର ଦୁଃଖ ଓ ହତାଶା ବୁଝି ପାରିବେ ? ଆଜି ସେଦିନଟାର ସମସ୍ତ ଦୁର୍ଯୋଗ ଓ ଦୁର୍ଦ୍ଦଶାକୁ ମନେ କରିଥିଲି—ଜୀବନରେ ଏକ ମହାର୍ଘ ଅଭିନବ ପ୍ରତ୍ୟକ୍ଷ ଅନୁଭୂତି ଲାଗି ଅବଶ୍ୟମ୍ଭାବୀ କୃଚ୍ଛ୍ର ସାଧନ ତପସ୍ୟା ରୂପେ ! ମାତ୍ର ହାୟ ! ଏଇ ସ୍ୱାର୍ଥ-

Digitized by srujanika@gmail.com

ବୈଜ୍ଞାନିକ ଡାକ୍ତରଙ୍କଠାରେ ତା'ହେଲେ ସବୁ ଦିଗରୁ ଲାଭବାନ ! ସେ ଦେଖିଲା ଆଉ ଶୁଣିଲା, ମୁଁ କେବଳ ଶୁଣିଲି ! ! ଆଉ ଦୁଃଖ କରିବା ଲାଗି ସ୍ନାୟୁର ଜୋର ନଥିଲା । ମନକୁ ସାନ୍ତ୍ୱନା ଦେଲି—ହଉ ହଉ, କାହାରି ନସିବ ହୋଇନାହିଁ; ଶୁଣିଛୁ ତ ? ଆଉ କାହାଠାରୁ ଶୁଣିନାହିଁ—ନିଜେ ଶୁଣିଛି—ଏତିକି ଯଥେଷ୍ଟ । ରାତି ପାହି ଆସିଥିଲା । ଆମର କାନ୍ଦକଟା ରଡ଼ିରେ ସେହି ଗ୍ରାମର କେତେ ଲୋକଙ୍କର ପାହାନ୍ତି ପହରର ପତଳା ନିଦ୍ରା ଭାଙ୍ଗି ଯାଇଥିଲା । ସେମାନେ ଦାଣ୍ଡକୁ ବାହାରି ଆସିଲେ । ଆମେ ବି ଉଠିଲୁ । ଆମକୁ ଏପରି ଅବସ୍ଥାରେ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଆମକୁ ପଚାରିଲେ, କ'ଣ କଥା ? ଆମେ ମହାନ୍ ଗୌରବରେ ସବୁ କଥା ବର୍ଣ୍ଣନା କଲୁ ।

ଜଣେ ଗ୍ରାମବାସୀ କହିଲା, ତୁମ ଭାଗ୍ୟ ଭଲ; ତୁମ ବକ୍ତେଇ ବଳୀଆର—ତୁମେ ଖସି ଆସିଲ—ଦୁଇଜଣଥିଲ ବୋଲି, ନହେଲେ ସେ ଛାଡ଼ି ନଥାନ୍ତା—

ଆଉଜଣେ କହିଲେ, ଆରେ ନାହିଁ; ଦୁଇଜଣ କଣ ଦୁଇଶ' ଜଣ କଣ ? ସେ ଚୋଟରେ ଯେଉଁ ଜନ୍ତୁ (ଭୌତିକ ଜନ୍ତୁ) ଅଛନ୍ତି ତାଙ୍କ ହେକାରେ ପଡ଼ିଗଲେ ଗୋଟି ଗୋଟି କରି ମୋଡ଼ିଦେଇ ବାନ୍ତେ । ଅସଲ କଥା, ପାଖରେ ସାଇକେଲ ଥିଲା । ସାଇକେଲରେ ଲୁହା ଅଛି । ଲୁହା ଥିଲେ ସେମାନେ ଟିକିଏ···

ଆମେ ଦୁହେଁ ଯେପରି ଭାବେ ବଞ୍ଚିଥାଉ ପଛକେ, ଆମେ ସେ ଭୂତ ଦେଖିଛୁ ଓ ଶୁଣିଛୁ, ଏବଂ ନ ମରି ବଞ୍ଚିଛୁ, ଏହାହିଁ ଆମର ଏତେ ଦୁର୍ଯୋଗ ଭିତରେ ଯଥେଷ୍ଟ ସାନ୍ତ୍ୱନା ଓ ଜୀବନରେ ଯଥେଷ୍ଟ ଗୌରବ···।

କିନ୍ତୁ ପାଠକେ ! କଥାଟା ଏଇଠାରେ ସରି ଯାଇଥିଲେ ଭଲ ହୋଇଥାଆନ୍ତା । ଆମେ ସେଠାରୁ ଖସିଯାଇ ଆମ ଗ୍ରାମକୁ ଚାଲି ଯାଇ-ଥିଲେ ଭଲ ହୋଇଥାନ୍ତା, କିନ୍ତୁ ଭୂତ ଦେଖିବା ଗୌରବରେ ଆମେ

Digitized by srujanika@gmail.com

ଏତେ ଫୁଲ ଉଠିଥିଲୁ ଯେ ହାତ ହଲଇ, ପାଟିକରି ଆମେ ଆମର ଭୌତିକ ଅଭିଜ୍ଞତା ଉପରେ ବକ୍ତୃତା ଆରମ୍ଭ କରିଦେଲୁ । ଢେର ଦୋହଗଲ ପୂରାପୂରି । ଘଟଣା ଶୁଣିବା ଲାଗି କ୍ରମେ ଲୋକଭିଡ଼ ହେଲା । ଆମେ ମଧ୍ୟ ଆମର ପ୍ରତ୍ୟକ୍ଷ ଅଭିଜ୍ଞତା ବର୍ଣ୍ଣନାର ଉନ୍ମାଦନାରେ ଶତଜିହ୍ୱା ହୋଇ ଉଠିଲୁ । ଏତେ ଲୋକଙ୍କ ମଧ୍ୟରେ ଆମେ ମାତ୍ର ଦୁଇଜଣ ବୀରପୁରୁଷ ଟେନାର୍ଫି ଆଉ ହିଲାରୀ । ଏଥର ଆମେ କହିବୁ ଏମାନେ ଶୁଣିବେ ।

ହଠାତ୍ ସଦାବ୍ରତ ରାଧାକାନ୍ତ ମଠର ଟୋକା ଜଣେ ବାବାଜୀ ମଧ୍ୟ ଆସି ସେଠାରେ ପହଞ୍ଚିଗଲେ । ସବୁ ଶୁଣିସାରି ସେ ହସି ଉଠିଲେ । ମୁଁ ବିରକ୍ତ ହୋଇ ଉଠିଲି । ପଚାରିଲି—ହସିଲ କାହିଁକି ? କୁହ କାହିଁକି ହସିଲ ? ବାବାଜୀ ହଠାତ୍ ଗମ୍ଭୀର ହୋଇଯାଇ କହିଲେ—ଆସ ବାବୁ ଆସ—ତୋଟାକୁ ଯିବା ଆସ । ତୁମ ସାଇକେଲ ଆଣିବା—ଆମେ ଭୂତ ଦେଖି ଆସିବ ଦିନରେ । ମୁଁ ଦେଖାଇ ଦେବି । ଅ.ସ ।

ଆଶ୍ଚର୍ଯ୍ୟ ହୋଇ ତାଙ୍କ ପଛେ ପଛେ ଚଲୁ । ତୋଟା ଭିତରେ ସାଇକେଲ ଦୁଇଟି ସେହିପରି ପଡ଼ିଛି । ଭୂତମାନେ ନେଇ ନାହାନ୍ତି । କିନ୍ତୁ ଏ କ'ଣ ? ଏ କ'ଣ ସେଇ ତୋଟା ? କାଲି ରାତିର ଅନ୍ଧାରିଆ ରହସ୍ୟମୟ (ପ୍ରେତାୟିତ) ବାୟୁ ମଣ୍ଡଳକୁ ଦିନର ସୂର୍ଯ୍ୟ ନଷ୍ଟ କରିଦେଇଛି ବାବାଜୀ ହାତ ଦେଖାଇ କହିଲେ—ଏଇଟା କ'ଣ ବାବୁ ?

ଆମେ ଦେଖିଲୁ, ଦୁଇଟା ବଡ଼ ବଡ଼ ହାତୀ ଜଞ୍ଜିରରେ ଗଛ ମୂଳରେ ବନ୍ଧା ହୋଇଛନ୍ତି—ଆଉ ତାଙ୍କ ପାଖରେ କେଇଟା ଭଙ୍ଗା ଡାଳ ପଡ଼ିଛି । ଥୋଡ଼ ପାହାରଟାକୁ ଲମ୍ବାଇ ବୃଂହଣ କରି ଉଠିଲେ ଦୁଇଟି ହସ୍ତୀ । ବାବାଜୀ କହିଲେ ପାଞ୍ଚ ବର୍ଷ ପରେ କାଲି ସନ୍ଧ୍ୟାବେଳେ ଚୁରଜଣ ନାଗା ସନ୍ନ୍ୟାସୀ ଆସି ପହଞ୍ଚିଛନ୍ତି ମଠରେ ।

Digitized by srujanika@gmail.com

ଭୂତ ଜଗତ ଭସ୍ମ ମୋର ସଜ୍ଞାନତାକୁ ଲୋପକରି ପାରି ନ ଥିଲା । ବନର ଆଲୁଅରେ ଯେତେବେଳେ ସ୍ପଷ୍ଟ ହୋଇ ଉଠିଲେ ଦୁଇଟି ଜୀବନ୍ତ ହାଡ଼ା—ଆଜ ସ୍ପଷ୍ଟ ହୋଇ ପ୍ରମାଣିତ ହୋଇଗଲା ଯେ, ଆମେ ଦୁହେଁ ଭୂତ, ସେଇ ହତାଶା ଓ ଭଗ୍ନମନୋରଥ ବ୍ୟର୍ଥତାରେ ମୋର କ୍ଳାନ୍ତ ଦେହ ସେଇଠି ଭୂମିରେ ଢଳି ପଡ଼ିଲା । ମାତୁଳପୁତ୍ର ଡାକ୍ତର ନରି ଭାଇନାଙ୍କ ଚିକିତ୍ସାରେ ମୋର ପୁଣି ଚେତା ହୋଇଥିଲା ।

ମାନ୍ୟ ପାଠକେ ! ସ୍ୱାଠାରୁ ବଳି ଆଉ ଟ୍ରାଜେଡ଼ି ଅଛି ଜୀବନରେ ବା ଭୌତିକ ଶାସ୍ତ୍ରରେ ? କିନ୍ତୁ ଏ ଟ୍ରାଜେଡ଼ିର ନାୟକ ପ୍ରକୃତରେ କିଏ ମୁଁ ନା ଡ଼ାକ୍ତର ନରି ଭାଇନା ?



# ହୃଦାନନ୍ଦ ବାବୁ ଓ ହୃଦୟ ବୃତ୍ତାନ୍ତ

ହୃଦାନନ୍ଦବାବୁଙ୍କୁ ଆଜକାଲି ଗୋଟେ ପ୍ରକାର ହୃଦ୍-ରୋଗ ଧରିଛି । ଛାତିଟା ଅନେକ ସମୟରେ ଧପ୍ ଧପ୍ ପଡ଼ୁଛି । ବେଳେ ବେଳେ ଥରୁଛି । ନିଃଶ୍ୱାସ ନେବାରେ କଷ୍ଟ ହେଉଛି । ଥରେ ଥରେ ଛାତି ପୋଡ଼ୁଛି । ଆଉ କେତେକ ସମୟରେ ଚିତ୍ହୋଇ ଶୋଇବା ବେଳେ ତାଙ୍କର ମନେ ହେଉଛି —ହୃଦୟଟା ସତେବା ମୂଳରୁ ନାହିଁ ।

ହୃଦୟ କାହାକୁ କହନ୍ତି ସେ ଏ ପର୍ଯ୍ୟନ୍ତ ଭଲ ଭାବେ ଜାଣି ନାହାନ୍ତି । ଅବଶ୍ୟ ହୃଦୟ ଅର୍ଥରେ ସେ ହିନ୍ଦିରେ ଦିଲ୍ ଶବ୍ଦ ଶୁଣିଛନ୍ତି । ଆଉ ଇଂରାଜୀରେ ହାର୍ଟ ଶବ୍ଦ ବି ଜାଣିଛନ୍ତି । କିନ୍ତୁ ହୃଦୟର ଅବସ୍ଥାନ କେଉଁଠି, ଏହାର ସ୍ୱରୂପ କିପରି—ଏ ବିଷୟରେ ବିଜ୍ଞାନ-ସମ୍ମତ ଜ୍ଞାନ ତାଙ୍କର ନାହିଁ । ଓଡ଼ିଆରେ ବି 'ହୃଦୟ' ଶବ୍ଦର ଆଉ କୌଣସି ଭାବଦ୍ୟୋତକ ପ୍ରତିଶବ୍ଦ ନାହିଁ । ପିଲାଦିନେ ପ୍ରେମ କବିତା ଓ ପ୍ରେମ ଗଳ୍ପରେ ହୃଦାନନ୍ଦ-ବାବୁ ହୃଦୟର ଭିନ୍ନ ଅର୍ଥ ବୁଝିଥିଲେ । ପ୍ରେମ କଲାବେଳେ ନାୟକ ନାୟିକା ହୃଦୟ ଦିଆନିଆ ହୁଅନ୍ତି । କେତେବେଳେ କାହା ହୃଦୟ ପୋଡ଼ିଯାଏ । କାହା ହୃଦୟ ଫାଟିଯାଏ । କାହା ହୃଦୟ କବାଟ କାହା ଲାଗି ଖୋଲିଯାଏ । କିଏ ହୃଦୟରେ ଜାଗର ଜାଳେ । କାହା ହୃଦୟରେ କୋଇଲି ବୋବାଏ । କାହା ହୃଦୟରେ କାହାର ମୂର୍ତ୍ତି ଲେଖିରହେ । କାହା ହୃଦୟ ତରଳି ଯାଏ ତ କାହା ହୃଦୟ ହଠାତ୍ ମଝିରେ ପଥର ପାଲଟି ଯାଏ । କିନ୍ତୁ ହୃଦାନନ୍ଦ ବାବୁ ନିଜ ହୃଦୟର ଏହି ସବୁ ପ୍ରବୃତ୍ତି ଓ ପରିବର୍ତ୍ତନ ଚଞ୍ଚଳ ଯୌବନରେ କେବେ ଲକ୍ଷ୍ୟ କରି ନାହାନ୍ତି । ସେ କେବଳ ଛାତିରେ ହାତମାରି ଦେଖିଛନ୍ତି—ଛାତି ଭିତରେ ଲପ୍ ଧପ୍ ଲପ୍ ଧପ୍ କରି କେବଳ ଗୋଟିଏ ଶବ୍ଦ ଅନବରତ ଚାଲିଛି । ଆଉ କିଛି ନାହିଁ । ମୋଟ ଉପରେ ସେତେବେଳେ ହୃଦାନନ୍ଦ ବାବୁ ତାଙ୍କ ହୃଦୟର ସ୍ଥିତି ବା କୌଣସି ପରିବର୍ତ୍ତନ ସମ୍ବନ୍ଧେ ଆଦୌ ସଜାଗ ହୋଇ ନାହାନ୍ତି ।

Digitized by srujanika@gmail.com

ହୃଦାନନ୍ଦ ବାବୁ ଥିଲେ ବଡ଼ ବୁଦ୍ଧିମାନ ବ୍ୟକ୍ତି । ନିଜର ମସ୍ତିଷ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ଥିଲା ମଧ୍ୟ ଦୃଢ଼ ପ୍ରତ୍ୟୟ ମସ୍ତିଷ୍କ ଉପରେ ନିର୍ଭର କରି ସେ ନିଜର ଆର୍ଥିକ ଅବସ୍ଥାର ଉନ୍ନତି କରିଛନ୍ତି । ପାରିବାରିକ ସମସ୍ୟା ଗୁଡ଼ିକ ସମାଧାନ କରିଛନ୍ତି ଏବଂ ସମାଜରେ ନିଜର ପ୍ରତିପତ୍ତି ଯଥାରୀତି ରକ୍ଷାକରି ଆସିଛନ୍ତି । ସେ ମସ୍ତିଷ୍କ ଖର୍ଚ୍ଚ କଲେ ବୋଲି ତାଙ୍କ ବଡ଼ ପୁଅ ବାହାହୋଇ ବହୁତ ଯୌତୁକ ପାଇଲା—ପାଇଲା ବି ଶ୍ୱଶୁରଙ୍କର ସ୍ଥାବର ଅସ୍ଥାବର ସମ୍ପତ୍ତିର ଉତ୍ତରାଧିକାରୀ ସ୍ୱତ୍ୱ । ସେ ମୁଣ୍ଡଖଟେଇ ପାରିଲେ ବୋଲି ତାଙ୍କ ସାନପୁଅ ସରକାରୀ ଟଙ୍କାରେ ଦୁଇବର୍ଷ ଲାଗି ଆମେରିକା ଯାଇ ପାରିଲା ପଢ଼ିବା ଲାଗି । ସେ ବୁଦ୍ଧି ଲଗାଇଲେ ବୋଲି ତାଙ୍କର ଝିଅ ନବଘନ ମହାପାତ୍ର ଇଞ୍ଜିନିଅରକୁ ବାହା ହୋଇ ପାରିଲା । ଖାଲି ଏତିକି ନୁହେଁ, ଜୀବନରେ ସେ ଯାହା କିଛି କରିଛନ୍ତି ନିଜର ନିରାପତ୍ତା ଓ ସମୃଦ୍ଧି ଲାଗି—ତାହା କେବଳ ତାଙ୍କର 'ମୁଣ୍ଡ' ଯୋଗୁ, ତାଙ୍କ ବୁଦ୍ଧି ବଳରୁ । ତେଣୁ ହୃଦାନନ୍ଦ ବାବୁ ଜୀବନରେ ଅଧିକାଂଶ ଭାଗ ତାଙ୍କର ଉର୍ବର ମସ୍ତିଷ୍କଟିର ଯତ୍ନ ନେଇଛନ୍ତି । ଗାଧୋଇବାର ଅଧଘଣ୍ଟାଏ ପୂର୍ବରୁ ମୁଣ୍ଡରେ ବ୍ରହ୍ମୀଘୃତ ମାଲିସ କରିଛନ୍ତି । ରାତିରେ ଶୋଇବା ପୂର୍ବରୁ ମୁଣ୍ଡରେ ମଧ୍ୟମ ନାରାୟଣ ତେଲ ମାଲିସ କରି ଶୋଇଛନ୍ତି । ଯେଉଁ ମୁଣ୍ଡ ତାଙ୍କୁ ଗୋ, ଭୂମି, କାଞ୍ଚନ ଓ ପ୍ରତିପତ୍ତି ଦେଇପାରିଛି । ହୃଦାନନ୍ଦ ବାବୁ ସେ ମୁଣ୍ଡକୁ ରଖିବା ଲାଗି ସର୍ବତୋଭାବେ ଯତ୍ନ ନେଇଛନ୍ତି । କିନ୍ତୁ 'ହୃଦୟ' କଣ ଓ ତାହାର କାର୍ଯ୍ୟ କ'ଣ, ତାହାର ଆବଶ୍ୟକତା କେତେ ଓ ତାକୁ ସୁରକ୍ଷିତ କରିବାର ପ୍ରୟୋଜନୀୟତା ଅଛି କି ନାହିଁ, ଏ ବିଷୟରେ ହୃଦାନନ୍ଦ ବାବୁ କେବେ ମୁଣ୍ଡ ଖେଳେଇ ନାହାନ୍ତି । କବିମାନେ କିମ୍ବା ପ୍ରେମିକମାନେ କିମ୍ବା ସେହିଭଳି ଉନ୍ମାଦଗ୍ରସ୍ତ ରୋଗୀମାନେ 'ହୃଦୟ'କୁ ନେଇ ଯେତେ ତମ୍ବୁ ତୋଫାନ କରନ୍ତୁ ନା କାହିଁକି—ହୃଦାନନ୍ଦ ବାବୁ ଜାଣନ୍ତି, ତାଙ୍କର ମସ୍ତିଷ୍କ ଭଲ ତ ସେ ଭଲ—ଆଉ ଦୁନିଆ ଭଲ ।

ନିଜ ହୃଦୟ ଉପରେ ଏ ଉଦାସୀନତା ଦେଖି, ତାଙ୍କର ନିନ୍ଦୁକମାନେ ତାଙ୍କ ପିଠିରେ କାତର ହୋଇ ପ୍ରଚାର କରିଛନ୍ତି ଯେ,

Digitized by srujanika@gmail.com

"ହୃଦାନନ୍ଦ ବାବୁଙ୍କର ହୃଦୟ ନାହିଁ । ସେ ହୃଦୟ-ହୀନ । କାହା ଦୁଃଖରେ ଦିନେ ଭଲ ତାର ହୃଦୟ ତରଳିଛି ?"

ହୃଦାନନ୍ଦବାବୁ ନିନ୍ଦୁକମାନଙ୍କ କଥ, ଦୁଇଟି କାରଣରୁ ଶୁଣି ନାହାନ୍ତି । କାରଣ—(୧) ସେ ଜାଣନ୍ତି—"ନିନ୍ଦୁକମାନଙ୍କ କଥା ଶୁଣି ମସ୍ତିଷ୍କବାନ ବ୍ୟକ୍ତି ସମୟ ନଷ୍ଟ କରେ ନାହିଁ । (୨) ତା ଛଡ଼ା ନିନ୍ଦୁକମାନଙ୍କ କଥାରେ କିଛି ଯୁକ୍ତି ନାହିଁ । ତାଙ୍କଠାରେ ଯଦି ହୃଦୟ ନାହିଁ ବୋଲି ସେମାନେ ବୁଝିଛନ୍ତି—ତେବେ ହୃଦୟ ତରଳିଲା ନାହିଁ ବୋଲି ତାଙ୍କର ଦୋଷ କେଉଁଠି ରହିଲା ?"

ହୃଦାନନ୍ଦବାବୁଙ୍କର ଆଉ କଣ ସବୁ ଦୋଷ ଅଛି, ସେ କଥା ତାଙ୍କ ନିନ୍ଦୁକମାନେ କହିବେ । କିନ୍ତୁ ଆମେ ଜାଣୁ—ଖାଇବା କଥାରେ ସେ ଗୋଟିଏ ଯନ୍ତ୍ର । ମୁଣ୍ଡ ଖରଚ କଲାବେଳେ ସେ ଯେମିତି କାହା ମୁହଁକୁ ଚାହାନ୍ତି ନାହିଁ—ତୁଣ୍ଡ ଚଳାଇଲା ବେଳେ ବି ସେମିତି ତଳକୁ ମୁହଁ ପୋତି ଖାଆନ୍ତି । ତାଙ୍କ ସ୍ତ୍ରୀ ଉନ୍ମାଦିନୀ ଦେବୀ କିନ୍ତୁ ସ୍ୱାମୀଙ୍କର ଏହି ହୃଦୟହୀନତାରେ ଚିରଦିନ ସନ୍ତପ୍ତା । ଯୌବନ କଟିଗଲା—ସ୍ୱାମୀଙ୍କୁ କେବଳ ନିଅନ୍ତିଅଣ ଛଅଭଜା କରି ରାନ୍ଧି ପରଶିବାରେ । ସ୍ୱାମୀ ନିଜ ବୁଦ୍ଧି-ବଳରେ ଜାଣିଛନ୍ତି—ସୁନ୍ଦର ସୁନ୍ଦରୀଙ୍କ ହାତରେ ଖାଇବା ଯାହା—ଅଜାଣତରେ ଦିନେ ବିଷଖାଇ ମରିବା ସେଇ ଏକା କଥା । ଆଉ ଭାର୍ଯ୍ୟା କେବଳ ପୁତ୍ରାର୍ଥେ ନୁହେଁ—ରନ୍ଧନଶାଳାର୍ଥେ । ସୁପାଚିକା ହିସାବରେ ମଧ୍ୟ ତା'ର ଆବଶ୍ୟକତା କିଛି କମ୍ ନୁହେଁ । ସ୍ୱାମୀ ସଙ୍ଗେ ୨୮ ବର୍ଷର ଘରକରଣାରେ ଉନ୍ମାଦିନୀ ଦେବୀ ନିଜ ଅଭିଜ୍ଞତାରୁ ବୁଝିଛନ୍ତି ଯେ ସ୍ୱାମୀଙ୍କ ପାଖରେ ତାଙ୍କର ଆବଶ୍ୟକତା ଏଇ ଦୁଇଟି ମାତ୍ର କ୍ଷେତ୍ରରେ । ଏଥିରୁ ଅଧିକ ସ୍ଥାନ ଦାବୀକରି ମଝିରେ ସେ "ଚିନ୍ମୟୀ" ଦେବୀରୁ "ଉନ୍ମାଦିନୀ" ଦେବୀ ପଦକୁ ଉନ୍ନୀତ ହୋଇଛନ୍ତି । ତା'ପରେ ସେ ଆଉ କିଛି ଦାବୀ କରିପାରି ନାହାନ୍ତି ଏବଂ ଗୋଟିଏ ଘରେ ସବଦା ଖଟ ଉପରେ ପଡ଼ିରହି ନିଜର ବୟସ୍କ ପୁଅ ଝିଅ ମାନଙ୍କ ଆଗରେ ସେ ସବଦା ଆପତ୍ତି କରି ବସିଛନ୍ତି ।

"ତୋ ବାପର ହୃଦୟ ଅଛି ନାରେ ?"

Digitized by srujanika@gmail.com

ହୃଦାନନ୍ଦବାବୁଙ୍କର ଯେଉଁ ଝିଅଟି ଏବେ ନୂଆ ହୋଇ ଡାକ୍ତରୀ ପଢ଼ୁଛି—ସେ କହେ—

"ତୁମ ମୁଣ୍ଡରେ କିଛି ଠିକ୍ ନାହିଁ ମାଆ ! ହୃଦୟ ନ ଥିଲେ ବାପା ବଞ୍ଚିଥାନ୍ତେ କେମିତି ?"

"କାହିଁକି ? ତୋ ବାପର ଲିଭରଟା ତ ଏ ପର୍ଯ୍ୟନ୍ତ ଠିକ୍ ଅଛି । ସେଇ "ଲିଭର" ଟାଇ ତାଙ୍କ ହାର୍ଟ କାମ ଚଳାଉଛି ।"

ବଡ଼ପୁଅ, ଯେ ଓକିଲାତି କରି ବାପଙ୍କୁ ବି ବଳିଯିବାର ସୂଚନା ଦେଖାଇଲାଣି ସେ କହିଲେ—

"ମାଆ ! ତୁମେ ବଡ଼ ବାଜେ ବକୁଛ । ବାପାଙ୍କର ହୃଦୟ ନ ଥାଇ ପାରେ । କିନ୍ତୁ ତୁମ ଅପେକ୍ଷା, ବାପାଙ୍କ ମୁଣ୍ଡଟା ଅଧିକ ସୁସ୍ଥ । ତୁମେ ଆଉ ଆମେ ସମସ୍ତେ ତ ବାପାଙ୍କ ମୁଣ୍ଡ ଉପରେ ନିର୍ଭର କରି ଏ ପର୍ଯ୍ୟନ୍ତ ଚଳୁଚେ । ମଣିଷ ଗୋଟିଏ ବୁଦ୍ଧିମାନ ପ୍ରାଣୀ । ବାପାଙ୍କର ମୁଣ୍ଡଟା ବୁଦ୍ଧିଆ ଆଉ ଲିଭରଟା ପଶୁର । ତୁମର କିନ୍ତୁ କୋଉଟା ନାହିଁ । ନା ଗୋଟେ ସୁସ୍ଥ ଉର୍ବର ମସ୍ତିଷ୍କ—ନା ଗୋଟେ ସୁସ୍ଥ ସର୍ବଗ୍ରାସୀ ପାକସ୍ଥଳୀ ।

ଉନ୍ମାଦିନୀ ଦେବୀ ଅଧିକ ଉତ୍ତେଜିତ ହୋଇ କ'ଣ କହିବାକୁ ଯିବା ପୂର୍ବରୁ ପିଲାମାନେ କବାଟ ଅଉଜାଇ ଚାଲି ଆସନ୍ତି । ବାପାଙ୍କର ହୁଏତ ଏହାହିଁ ନିର୍ଦ୍ଦେଶ ।

× × ×

କିନ୍ତୁ ଏଇ କେତେ ଦିନ ଧରି ସ୍ମୃତି ଭିତରେ ଏହି ଯନ୍ତ୍ରଣା ବୋଧକରି ହୃଦାନନ୍ଦ ବାବୁ ମନମଧ୍ୟରେ ବଡ଼ ବିବ୍ରତ ବୋଧ କରୁଛନ୍ତି ।

Digitized by srujanika@gmail.com

"ହୃଦୟ ନାହିଁ—" ଏ ଅପବାଦ ସେ ମୂଳରୁ ବେଶୀ ଥର ଶୁଣେ ଥିବ ଆସିଛନ୍ତି । ଆଳସ୍ୟ ପରସ୍ପର, ପରଶ୍ରୀକାତର, ବୃଦ୍ଧିହୀନ ଇତର ଲୋକଗୁଡ଼ାକର ପରନିନ୍ଦା ଚର୍ଚ୍ଚା କରିବା ତୋଟାଏ ବାଜେ ପ୍ରବୃତ୍ତି । ହୃଦାନନ୍ଦବାବୁଙ୍କର ସମବୟସ୍କ କୌଣସି ବ୍ୟକ୍ତି ଯଦି ତାଙ୍କୁ କହନ୍ତି—

"ହୃଦାନନ୍ଦ, ପ୍ରକୃତରେ ଲୋକେ ଯାହା କହନ୍ତି—ତୋର ହୃଦୟ ନାହିଁ ।"

ହୃଦାନନ୍ଦ ବାବୁ ହସି ହସି ତାଚ୍ଛଲ୍ୟ କରନ୍ତି—

"କଣ ହେଲା ସେଇଥିରୁ—ମୋର ହୃଦୟ ନାହିଁ ବୋଲି ? ଲୋକେ ଯଦି କହନ୍ତେ—ହୃଦାନନ୍ଦ ବାବୁଙ୍କର ଲଙ୍ଗ ନାହିଁ—ତା'ହେଲେ ମୁଁ କଣ ଲଙ୍ଗର ଅଭାବ ବୋଧ କରିବାକୁ ବାଧ୍ୟ ? ବୃଦ୍ଧିମାନ ଲୋକର ଯାହାସବୁ ନାହିଁ—ତାହା ଦରକାର ନାହିଁ ବୋଲି ନାହିଁ । ଏଇ ସୂକ୍ଷ୍ମ କଥାଟି ତୁମମାନଙ୍କ ମୁଣ୍ଡରେ ପଶୁନାହିଁ ?"

ସେମାନେ ନୀରବ ରହନ୍ତି ।

ଆଜିକାଲି କିନ୍ତୁ ହୃଦାନନ୍ଦ ବାବୁ ଯନ୍ତ୍ରଣାଟିକୁ ଯୁକ୍ତିବଳରେ ଉଡ଼ାଇ ଦେଇ ପାରୁ ନାହାନ୍ତି । ତାଙ୍କର ବରଂ ସନ୍ଦେହ ହେଉଛି—ସେ ଆଜି ପର୍ଯ୍ୟନ୍ତ ହୃଦୟଟାକୁ ଅବହେଳା କରି ଆସିଛନ୍ତି ବୋଲି ଶେଷ ବେଳକୁ ହୃଦୟଟା ତାର ପ୍ରତିଶୋଧ ନେଉଛି ।

ହୃଦାନନ୍ଦ ବାବୁଙ୍କର ହୃଦ୍ ଯନ୍ତ୍ରଣା କଥା ଶୁଣି ସ୍ତ୍ରୀ ଉନ୍ମାଦନୀ ଦେବୀ କହିଲେ—

......ଶିରନାସ୍ତି ଶିରପୀଡ଼ା—ମୂଳରୁ ତ ହୃଦୟ ନାହିଁ—ପୀଡ଼ା ହେଉଛି କୋଉଠି ?

Digitized by srujanika@gmail.com

ହୃଦାନନ୍ଦ ବାବୁ ଆଉ କାହାକୁ କିଛି ନ କହି ଦିନେ ହୃଦରୋଗ ବିଶେଷଜ୍ଞ ଡାକ୍ତରଙ୍କ ପାଖରେ ପହଁଚିଲେ ।

ଡାକ୍ତର ! ମୋର ହାର୍ଟଟାକୁ ପରୀକ୍ଷା କରି ଦେଖନ୍ତୁ ! ଏ କେତେଦିନ ଧରି ମୁଁ ବଡ଼ ହାର୍ଟ ଟ୍ରବ୍‌ଲ ଭୋଗୁଛି ।

ଡାକ୍ତର ବହୁ ପରୀକ୍ଷାକରି ମତ ଦେଲେ—କିଛି ଚିନ୍ତା ନାହିଁ । ଆପଣଙ୍କ ହାର୍ଟଟା ଏକଦମ୍ ଖତମ ହୋଇଗଲାଣି—ମାତ୍ର ଭୟ କରିବାର ମଧ୍ୟ କାରଣ ନାହିଁ । ଏତେ ବ୍ୟସ୍ତ ହେବା ଦରକାର ନାହିଁ । ବିଜ୍ଞାନ କଣ ନକରି ପାରୁଛି ? ଆପଣଙ୍କର ଏହି ଖତମ ମଣିଷ ହାର୍ଟଟାକୁ ବଦଳାଇ ଆମେ ମାଙ୍କଡ଼ର ହାର୍ଟ ଲଗାଇ ଦେଇ ପାରିବୁ । ତଦ୍ୱାରା ଆପଣଙ୍କର କିଛି ଅସୁବିଧା ହେବ ନାହିଁ । କେବଳ ଫଳମୂଳ ଖାଉଥିବାରୁ ମାଙ୍କଡ଼ ହାର୍ଟଟା ବରଂ ମଣିଷ ହାର୍ଟଠାରୁ ବେଶୀ ସବଳ ଆଉ ବେଶୀ ନିର୍ଭର ଯୋଗ୍ୟ । ଆପଣଙ୍କ ରାମାୟଣରେ ହନୁମାନର ଡେଇଁଲା—ଫାଟିଗଲା ନାହିଁ । ହାର୍ଟଟାକୁ ପୋଜସନ୍‌ଟା ଅନୁମାନ କରନ୍ତୁ ନା ! କେଡ଼େ ବଳୁଆ ହାର୍ଟ ! ସମୁଦ୍ର ଡେଇଁଲା—ଫାଟିଗଲା ନାହିଁ । ହାର୍ଟଟାକୁ ନଖରେ ବିଦାରିଦେଲା—ଅଥଚ କିଛି ହେଲାନାହିଁ ।

ହୃଦାନନ୍ଦ ବାବୁ ଚିନ୍ତାକଲା ଭଳି ପଚାରିଲେ—

ଓହୋ ! ସେ ପରକଥା । ବର୍ତ୍ତମାନ ତା ହେଲେ ମୋର ହାର୍ଟ ଆଗ ଅଛି ତ ? ?

ଡାକ୍ତର ଖୁବ୍ ଉତ୍ସାହ ଦେଲା ଭଳି କହିଲେ—

ହାର୍ଟ ନାହିଁତ ହାର୍ଟ ଖତମ ହେଲା କିପରି ? ଯେହେତୁ ଖତମ ହେବାଟା ସତ୍ୟ—ସେହେତୁ ଆପଣଙ୍କ ହାର୍ଟ ଅଛି ଏକଥା ନିଶ୍ଚୟ ସତ୍ୟ । ସେଥିପାଇଁ କହୁଛି—ସେ ସବୁ କଥା ଆପଣ ଛାଡ଼ନ୍ତୁ— ସେ ସବୁ ଦାୟିତ୍ୱ

Digitized by srujanika@gmail.com

ଆମକୁ ଦେଇ ଦିଅନ୍ତୁ । ଆପଣ ଏ ଖତମ ହୃଦୟଟି ବଦଳାଇବାକୁ ଚାହାଁ ହେଲେ—ଆମେ ଏ ମାଙ୍କଡ଼ ହୃଦୟଟି ଅତି ସହଜରେ ଲଗାଇଦେଇ ପାରିବୁ । ମାଙ୍କଡ଼ ହୃଦୟର ଲକ୍ଷଣ ହେଉଛି—ସେ ମାନବକ ହେବାକୁ ଚାହେଁ—ମାତ୍ର ମଣିଷ ହୃଦୟର ଲକ୍ଷଣ ହେଉଛି ସେ ମାଙ୍କଡ଼ ବୃତ୍ତିକୁ ଅନୁକରଣ କରିଥାଏ । ଆପଣ ଅଳ୍ପ ମାଙ୍କଡ଼ ହୃଦୟଟିଏ ଲଗାନ୍ତୁ— ତାହା ଆପଣଙ୍କ ଭଳି ବ୍ୟକ୍ତିଙ୍କ ପକ୍ଷରେ ଶୁଭପ୍ରଦ ହେବ ।

ହୃଦାନନ୍ଦ ବାବୁ ମାଙ୍କଡ଼ ହୃଦୟ କଥା ଶୁଣୁଶୁଣୁ ଏକା ଲମ୍ଫକେ ଡାକ୍ତର କକ୍ଷ ପରିତ୍ୟାଗ କରି ରାଜପଥରେ ଉଭାହେଲେ । ବାପାରେ ବାପ୍ ! ଯଦି ହୃଦୟର ପରିବର୍ତ୍ତନ ଦରକାର ପଡୁଛି—ତେବେ ମାଙ୍କଡ଼ ହୃଦୟ କାହିଁକି, କୁକୁରର ହୃଦୟ ବରଂ ତାଠାରୁ ବେଶୀ ସାହସୀ—ବେଶୀ ସଜାଗ, ବେଶୀ ସତର୍କ ଆଉ ବେଶୀ ନିର୍ଭରଯୋଗ୍ୟ । ହୃଦାନନ୍ଦ ବାବୁ ଡାକ୍ତର ଗୁଡ଼ାଙ୍କର ବୁଦ୍ଧିହୀନତା ଉପରେ ବିରକ୍ତ ହୋଇ ଚାଲୁ ଚାଲୁ ତାଙ୍କର ବନ୍ଧୁ ପୋଲିସ ଅଫିସର ଲୌକ ମର୍ଦ୍ଦନ ସିଂହଙ୍କ ସଙ୍ଗେ ଦେଖା ହେଲା । ହୃଦାନନ୍ଦ ବାବୁ କହିଲେ—

ବୁଝିଲ ବନ୍ଧୁ ! ଡାକ୍ତର ଛମାସ ହାର୍ଟ ଚୋଟାଏ ହାର୍ଟ ସ୍ପେସିଆଲିଷ୍ଟ ଆଜ ମୋ ହାର୍ଟ ଦେଖି କହୁଛି—ମୋର ହାର୍ଟଟା କୁଆଡ଼େ ଖତମ୍ ହୋଇଗଲାଣି ମାଙ୍କଡ଼ ହାର୍ଟଟିଏ ଲଗାଇବା କୁଆଡ଼େ ନିତାନ୍ତ ଦରକାର । ମୋର ସ୍ତ୍ରୀ ପୁଣି କହୁଛନ୍ତି—ମୋର କୁଆଡ଼େ ମୂଳରୁ ଜମା ହୃଦୟ ନାହିଁ । ତୁମର ମତ କଅଣ ?

ପୋଲିସ ଅଫିସର ଲୌକ ମର୍ଦ୍ଦନ ସିଂ ବିଶାଳ ଗୁମ୍ଫଟାକୁ ଗୁରାଇଁ ଫୁଲାଇ ବାଘୁଆ ନିଶରେ ହାତ ସାଉଁଳା ଦେଇ କହିଲେ—

ହୃଦୟ ଯଦି ନାହିଁ ତ—ନ ଥାଉ—କଣ ଖରାପ ହୋଇ ଯାଉଛି ସେଥିରେ ? ଆମର ଏବେ ହୃଦୟ ନାହିଁ !! ଧର ଆମର ଯଦି ହୃଦୟ

Digitized by srujanika@gmail.com

ଥାନ୍ତା— ତେବେ ଦେଶରେ ଏହି ଦାଢ଼ିଆ ସାଧୁ ସନ୍ୟାସୀ ଗୁଡାକ (ଏକ ସମୟରେ ପୁରୀ ରଥ ଯାତାରେ ଆମର ଲୋକପ୍ରିୟ ସରକାରୀ ପୋଲିସ ସାଧୁ ଦଳନ କରିଥିଲେ ) ଆଉ ଏହି ବାଲୁଙ୍ଗା ସ୍କୁଲ୍ କଲେଜ ଟୋକା ଗୁଡ଼ାକ (ଏମାନଙ୍କ ଦଳନ ତ ସବୁ ଯୁଗରୁ ଚୁଲିଛି) କ ଅଶାନ୍ତି ଭଲ ସୃଷ୍ଟି ନ କରନ୍ତେ !! ଏଗୁଡ଼ାକ ଦେଶରେ ଶୃଙ୍ଖଳା ରଖନ୍ତେ ।

ହୃଦାନନ୍ଦ ବାବୁ କହିଲେ—

ଅଚ୍ଛା ସେ କଥା ଥାଉ—ହୃଦୟ ପରିବର୍ତ୍ତନ ଉପରେ ତୁମର ମତ କଅଣ ?

ଲୋକ ମର୍ଦ୍ଦନ ସିଂ କହିଲେ—

ଜରୁରୀ-ଜରୁରୀ ଆବଶ୍ୟକ ହେଲେ ହୃଦୟ ପରିବର୍ତ୍ତନ ଜରୁରୀ ଦରକାର । ଆମର ଲୋକ ପ୍ରତିନିଧିମାନେ କିପରି ହୃଦୟ ପରିବର୍ତ୍ତନ କରନ୍ତି ? ଭୋଟ୍ ମାଗିଲା ବେଳର ହୃଦୟ—ଆଉ ଭୋଟ୍ ପାଇଲା ପର ହୃଦୟ କଅଣ ଏକା ବୋଲି ତୁମେ ଭାବୁଛ ?

ହୃଦାନନ୍ଦ ବାବୁ ସାମାନ୍ୟ ଆଶ୍ୱସ୍ତ ଥାଇ ଉତ୍ସାହିତ ହୋଇ କହିଲେ—

ବୁଦ୍ଧିମାନ ଲୋକେ ହିଁ ତେବେ ହୃଦୟର ପରିବର୍ତ୍ତନ କରନ୍ତି । ଠିକ୍ ସାପ ଯେମିତି କାତି ଛଡ଼ାଏ—ନା କଣ କହୁଛ ?

ନା-ନା – ଉଦାହରଣଟା ଠିକ୍ ହେଲା ନାହିଁ । ସାପ ତା' ଦେହର ଉପର ଚମଡ଼ା କେବଳ ବଦଳାଏ । କିନ୍ତୁ ମଣିଷ, ଆଉ ଲୋକ ପ୍ରତିନିଧିମାନେ ଏକଦମ୍ ଭିତରଟାକୁ—ମାନେ—ହୃଦୟଟାକୁ ପରିବର୍ତ୍ତନ କରିଦେଇ ଥାନ୍ତି—ଯଦି ଦରକାର ପଡ଼େ ଅବଶ୍ୟ !! ତୁମେ କହୁ ଯଦି

Digitized by srujanika@gmail.com

ହୃଦଯନ୍ତ୍ର ପରିବର୍ତ୍ତନ କରିବ – ତେବେ ମାଙ୍କଡ଼ ହୃଦଯନ୍ତ୍ର ନ ଲଗାଇ, ବାଘ ବା ସିଂହର ହୃଦଯନ୍ତ୍ରଟିଏ ଲଗାଇବା ଢେର ଭଲ । ଏ ଡାକ୍ତର ଗୁଡ଼ାକ ନହାନ୍ତ ଛେଳୁଆ । ତାଙ୍କର ଭୟ ହେଉଛି — ଯଦି ମଣିଷ ହୃଦଯନ୍ତ୍ରକୁ କାଟି ସେମାନେ ବାଘ କି ସିଂହର ହୃଦଯନ୍ତ୍ରଟିଏ ଲଗାଇ ଦେବେ — କାଳେ ସେହି ଅପରେସନ୍ ଟେବୁଲ ଉପରେ ରୋଗୀ ଉଠି ଡାକ୍ତରଙ୍କୁ ମାଡ଼ ବସିବ !!? ହେଃ –ହେଃ–ହେଃ — ହାଃ–ହାଃ–ହାଃ ।

ହୃଦାନନ୍ଦ ବାବୁ ବନ୍ଧୁ ପୋଲିସ ଅଫିସରଙ୍କ କଥାରେ ଖୁସୀ ହୋଇ ଘର ଆଡ଼େ ବୁଲିଲେ । ଗଲାବେଳେ ସେ ଗୋଟିଏ ଡେଜରୀ ଦୋକାନ ଭିତରକୁ ପଶିଲେ । ଉଦ୍ଦେଶ୍ୟ — କିଛି ଜିନିଷ ସାଙ୍ଗରେ କରି ଘରକୁ ନେବେ । ଦୋକାନୀଟି ହୃଦାନନ୍ଦ ବାବୁଙ୍କର ପରିଚିତ ନାଗୁଆ ଦୋକାନୀ । ଜିନିଷ କିଣିବା ପୂର୍ବରୁ ହୃଦାନନ୍ଦ ବାବୁଙ୍କ ଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଧୂନ୍ ଧୂନ୍ ଓ୍ୱାଲ କହିଲେ –

କିଏ ସେ ବେକୁବ୍ କହୁଛି — ଆପଣଙ୍କର ଦିଲ୍ ନାହିଁ ବୋଲି ? ଆପଣଙ୍କର ଦିଲ୍ ଅବଶ୍ୟ ଅଛି । ଆପଣ କିନ୍ତୁ ଖାଣ୍ଟି ଗୁଆ ଘିଅ ଆଦୌ ଖାଆନ୍ତି ନାହିଁ । ଗୋରୁଠାରୁ ଯକ୍ଷ୍ମା ରୋଗର ଜୀବାଣୁ ଗୋରସ ଭିତରକୁ ଆସି ଘିଅ ବାଟେ ଆପଣଙ୍କ ଦେହ ମଧ୍ୟକୁ ପଶିଯାଇ ପାରେ । ଗାଈ ଦୁଧ ମହାତ୍ମା ଗାନ୍ଧୀ କାହିଁକି ଖାଉ ନ ଥିଲେ ? ଆପଣ ବନସ୍ପତି ଡାଲଡା ଖାନ୍ତୁ ଦେଖି ଅଭ୍ୟାସ କର । ଡାଲଡ଼ାରେ ଭିଟାମିନ୍ ଏ.ବି.ସି.ଡ଼ି ସବୁ ରହିଛି । ଆମେ ମଧ୍ୟ ସେଇଥି ଲଗି ଖାଣ୍ଟି ଘିଅରେ ଅଧରୁ ବେଶୀ ଡାଲଡ଼ା ମିଶାଇ ବିକ୍ରି କରୁଛୁ । କେବଳ ଜନ କଲ୍ୟାଣ ଅର୍ଥେ ଆମର ଏ ଉଦ୍ୟମ ସିନା !! ତା’ ଛଡ଼ା ସମସ୍ତେ ଯଦି ଗୁଆଘିଅ ଖାଇବାକୁ ବସିବେ — ତେବେ ବେଶୀ ଗୋରୁ ଦୁଗ୍ଧ ଆବଶ୍ୟକ ହେବ । ତେଣୁ ଗଉଡ଼ମାନେ ବେଶୀ ବେଶୀ ଦୁଗ୍ଧ ଗୋମାତାଙ୍କ ଠାରୁ ଦୁହିଁ ଦେବେ । ଫଳରେ ବାଛୁରୀଗୁଡ଼ାକ ଝଡ଼ି ଯିବେ । ଆଉ ଗୋ–ଜାତିର କଲ୍ୟାଣ

Digitized by srujanika@gmail.com

ନ ହେବା ଫଳରେ ଦେଶ ରସାତଳକୁ ଯିବ । ଆପଣ ଆଜ୍ଞା ଆମର ବନସ୍ପତି ଘୃତ ଅଭ୍ୟାସ କରି ଖାଆନ୍ତୁ । ଆଉ ସରସ୍ୱତୀ ମାର୍କା ସୋରଷ ତେଲ ମଧ୍ୟ ଦେହରେ ଓ ଗୁଣ୍ଡରେ ଉତ୍ତମରୂପେ ମାଲିସ୍‌କରି ନାହିରେ ଟିକେ ବେଶୀକରି ପକାଇ ଆରାମରେ ଶୋଇ ଯାଆନ୍ତୁ । କାହାର ଫାଲ୍‌ତୁ କଥା ଶୁଣନ୍ତୁ ନାହିଁ । ମତରେ ଆପଣଙ୍କର ଦଳ୍ ଅବଶ୍ୟଭ ହେଉଛି ।

ହୃଦାନନ୍ଦବାବୁ ବନସ୍ପତିର ବଡ଼ ଟିଣେଟିଏ ଆଉ ସରସ୍ୱତୀ ମାର୍କା ସୋରଷତେଲ ଧରି କାର ଚଳାଇ ଘରକୁ ବାହରିଲେ ।

ଘରେ ଆସି ଦେଖିଲେ—ଅଧ୍ୟାପକ ଚରଣ କଙ୍କର ଦାସ ପାନ ଚୋବାଉଛନ୍ତି । ଆଉ ଉନ୍ମାଦନୀ ଦେବୀଙ୍କ ସଙ୍ଗେ ରସଭରିଆ ମଜାଗପ ଯୋଡ଼ି ହସି ହସି ଗଡ଼-ଯାଉଛନ୍ତି । ଉନ୍ମାଦନୀ ଦେବୀ ପ୍ରଥମବାର୍ଷିକ କଳା କ୍ଲାସର ତରୁଣୀ ଛାତ୍ରୀଟି ଭଳି ତାଙ୍କ ପାଖରେ ବସି ଲଜ୍ଜା, ମୁଗ୍‌ଧତା, ଆଉ ଭାବପ୍ରବଣତା ମଧ୍ୟରେ ଆତ୍ମ ପ୍ରକାଶ କରୁଛନ୍ତି । ଅଧ୍ୟାପକ ଚରଣ କଙ୍କର ଓଡ଼ିଆ ସାହିତ୍ୟରେ ଜଣେ ବଡ଼ ନାଗ ପଣ୍ଡିତ ଅଧ୍ୟାପକ । ସମ୍ପର୍କରେ ହୃଦାନନ୍ଦ ବାବୁଙ୍କର ଝିଅଆଡ଼ୁ ସମ୍ବନ୍ଧ ହେବେ । ସମୁଧୀଙ୍କୁ ଦେଖି ହୃଦାନନ୍ଦ ବାବୁ ଖୁସୀ ହେଲା ଭଳି କହିଲେ—

ଏଇ ଯେ ସମୁଧୀ । ତୁମେତ ଅଧ୍ୟାପକ ମଣିଷ । ଜଣେ ପକ୍‌କା ସାହିତ୍ୟ ରସିକ । ଆଚ୍ଛା କହିଲ ଦେଖି—ତୁମର ସମୁଦୁଣୀ ମୋତେ ସବୁବେଳେ କହୁଛନ୍ତି—ମୋର କୁଆଡ଼େ ହୃଦୟ ନାହିଁ । ଆଚ୍ଛା—ସତରେ କଣ ମୋର ହୃଦୟ ନାହିଁ ?

ସମୁଦୁଣୀ ଉନ୍ମାଦନୀ ଦେବୀ ପାଖରେ ଥିଲେ, ଚରଣ କଙ୍କର ବେଶୀ ପାନ ଚୋବାନ୍ତି । ଆଉ ବେଶୀ ବକନ୍ତି । ତାଙ୍କର ବିଗତ ତାରୁଣ୍ୟର ଚପଳତା ଓ ପ୍ରଗଲ୍‌ଭତା ସତେ ବା ଫେରି ଆସେ । ସେ ପାନ ଚୋବାଇ—

Digitized by srujanika@gmail.com

ଟିପରେ ଆଉ ଟିକେ ଚୂନ ଓ ଗୁଣ୍ଡି ଦେଇ ପାଟିରେ ପକାଉ ପକାଉ କହିଲେ—

"କି ହୃଦୟ କଥା କହୁଚ ହେ। ସମ୍ବନ୍ଧୀ। ସାହିତ୍ୟରେ ହୃଦୟ ଥାଉ ବା ନ ଥାଉ—ସାହିତ୍ୟ ଅଧ୍ୟାପକର ହୃଦୟ ନ ଥିଲେ ଚଳେ। ସାହିତ୍ୟ କ୍ଲାସରେ ହୃଦୟର ସମ୍ପର୍କ ଆଦୌ ନାହିଁ। ହୃଦୟ ନଥାଇ ମଧ୍ୟ ଲେଖକ ସାହିତ୍ୟରେ ପାଠ୍ୟ ପୁସ୍ତକ ଲେଖିପାରେ। କାରଣ ଯେଉଁ ସାହିତ୍ୟରେ ହୃଦୟର ସ୍ପର୍ଶ ରହିଛି—ସେ ଗୁଡ଼ାକ ଯେ ବଲ୍ କୁଲ୍ ଅପାଠ୍ୟ। ହୃଦୟର ସାହାଯ୍ୟ ନ ନେଇ ସାହିତ୍ୟ ଯେମିତି ପଢ଼ାଇହୁଏ—ବିନା ହୃଦୟର ଅନୁସରଣରେ ସାହିତ୍ୟ ସେମିତି ପଢ଼ିହୁଏ ଓ ପରୀକ୍ଷା ଦେଇ ହୁଏ। ସରକାର ଆମକୁ ମାସକୁ ମାସ ଦରମାଟା ନୋଟ ଆକାରରେ ଦେଉଥିବାରୁ—ଆମେ ସବୁ ଏଣିକି କ୍ଲାସରେ ନୋଟ୍ ଡାକୁଛୁ। ନୋଟ ତିଆରି କରିବାରେ ଯେମିତି ହୃଦୟ ଫୁଦୟ ଦରକାର ନାହିଁ—କ୍ଲାସରେ ସେମିତି ଢୁଲାଇ କରି ମଧ୍ୟ ହୃଦୟର ଅଭାବ ଅନୁଭବ ନ କରି ନୋଟ୍‌ଟା ଡାକିହୁଏ। ଆଉ ନୋଟ୍ ଯେଉଁମାନେ ଟିପନ୍ତି—ସେମାନେ ତ ହୃଦୟକୁ ସିନେମା ହଲରେ ରଖି ନୋଟ ରୂପକ କୁମ୍ଭୀର ଉପରେ ବସି ପରୀକ୍ଷା ନଦୀକୁ ପାର ହୁଅନ୍ତି। ତୁମର ଏବେ ହୃଦୟ ନାହିଁ। କଣ ହେଲା ସେଥିରେ ?"

•

ସମ୍ବନ୍ଧୀଙ୍କର ହୃଦୟସ୍ପର୍ଶୀ ଭାଷଣ ଶୁଣି ମନେ ମନେ ଖୁସୀ ହୋଇ ହୃଦାନନ୍ଦ ବାବୁ କ'ଣ କହିବାକୁ ଯାଉଛନ୍ତି—ଏଇ ସମୟରେ ତାଙ୍କର ଓକିଲ ପୁଅ କହିଲା—

"ବାପା ! ଆପଣ 'ହୃଦୟ—ହୃଦୟ' ଲାଗି ଯେତେ ଚିନ୍ତା କରୁଛନ୍ତି ତାହା ତ ଜଣାଇ ଦେଉଛି ଯେ, ଆପଣ କେଡ଼େ ହୃଦୟବାନ୍ ଆଜିକାଲି ଯୁଗରେ ଏତିକି ହୃଦୟବନ୍ତ ବି ଆପଣ ଆଉ କାହାଠାରେ ଦେଖିବେ ନାହିଁ। ଆଉ ମଧ୍ୟ ଆପଣ ତ ତିରିଶ ବର୍ଷର ଜଣେ ଅଭିଜ୍ଞ ଓକିଲ, ଆପଣ କହନ୍ତୁ ନା କୋର୍ଟରେ କାହାର ହୃଦୟ ଅଧିକ ଦରକାର !!

Digitized by srujanika@gmail.com

ଓକିଲଙ୍କର, ନା ଡାକ୍ତରଙ୍କର ? ମିଛକୁ ସତ ବୋଲି ପ୍ରମାଣିତ କରିବା ବେଳେ ଓ ସାଧୁକୁ ଚୋର ଓ ଚୋରକୁ ସାଧୁ ବୋଲି ପ୍ରମାଣିତ କଲାବେଳେ ଜଣେ ଅଭିଜ୍ଞ ଓକିଲ ଯେଉଁ ଉତ୍ସାହ ଓ ଉଦ୍ଦୀପନା ରକ୍ଷା କରି କଥାବାର୍ତ୍ତା କରେ, ତାହା ଓକିଲର ଦୃଢ଼ ଓ ବଳିଷ୍ଠ ହୃଦୟର ପରିଚାୟକ ନୁହେଁ କି ?

ବୃନ୍ଦାବନ ବାବୁ ଉଲ୍ଲସିତ ହୋଇ କହିଲେ—

"ତା'ହେଲେ ତୁମେ କହୁଛ—ମୋର ହୃଦୟ ଅଛି !! ଇଚ୍ଛା ଯଦି ଅଛି—ତେବେ ତୁମର ଏଇ ପାଗେଳ ମାଆ ଆଗରେ କୁହତ—ସେ ହୃଦୟର ସ୍ୱରୂପ କଅଣ । ଆଉ ମଧ୍ୟ ମାଅଙ୍କର ଓ ମୋ ହୃଦୟର ତୁଳନା କରି ଦେଖ ।"

ବୃନ୍ଦାବନ ବାବୁଙ୍କ ସାନପୁଅ ଇଞ୍ଜିନିଅର । ସେ ଚଟ୍ ଚଟ୍ ଉତ୍ତର ଦେଲା ।

"ଆପଣଙ୍କ ହୃଦୟଟା ବ ଟା, ଟ୍ରେନ୍ ଇଂଜିନ ପରି । ତାହା ନିଜ ଭିତରେ ଜଳୁଥାଏ । କିନ୍ତୁ ସବୁ ଡବାକୁ ଟାଣି ଟାଣି ନିଏ । ତା'ଭିତରେ ଏତେ ଉତ୍ତାପ ଯେ କେହି ସେଥିରେ ପ୍ରବେଶ କରିପାରନ୍ତି ନାହିଁ । ଆଉ ମଧ୍ୟ ହୀରାକୁଦ ବନ୍ଧ ଭଳି ଆପଣଙ୍କ ହୃଦୟ ଦୃଢ଼ ଓ କଠିନ । ମାଅଙ୍କ ହୃଦୟଟା କିନ୍ତୁ 'ଦଳେଇ ଘାଇ' ପରି । ଅସମୟରେ ଆଉ ସମସ୍ତଙ୍କର ଅଜାଣତରେ ସେଇଟା କେତେବେଳେ ଯେ ଭୁଷୁଡ଼ି ଯାଏ !!"

ବୃନ୍ଦାବନ ବାବୁ ଆନନ୍ଦରେ ଉତ୍ଫୁଲ୍ଲ ହୋଇ କହିଲେ ! ବାଃ ବାଃ—ଆଉ ଗୋଟିଏ ଉପମା ଦିଅତ ବାପା !

ଇଞ୍ଜିନିଅର ପୁଅ ଉତ୍ସାହିତ ହୋଇ କହିଲେ—

"ବାପା—ଉପମା ଖୋଜିଲେ ମିଳିବ ନାହିଁ । ଧରନ୍ତୁ—ଆପଣଙ୍କ ହୃଦୟଟା ଓଡ଼ିଶା ସରକାରଙ୍କ ପୂର୍ତ୍ତ ବିଭାଗର ପଞ୍ଚବାର୍ଷିକ ଯୋଜନା

Digitized by srujanika@gmail.com

କଟକ କ ପିଠାଲ ଗ୍ରନ୍ଥ'ପତ୍ର ସେଠି ଆଗ ଗ୍ରନ୍ଥ କୁ ବଙ୍କାକର ପରେ ସିଧା କରାଯାଏ । ଆଜ ତାର ପାଖେ ପାଖେ ରହିଛି ମ ଆଙ୍କର ହୃଦୟ । ଠିକ୍ ନିଆଳୀ ମାଧବ ରୋଡ଼ପର ପତନ ଅଭ୍ୟୁଦୟ ବନ୍ଧୁ ର ପନ୍ଥା—ଯେଉଁଠି କପ୍ରେର ବସିଗଲେ 'ହୃଦୟ' ଜିନିଷଟା କଣ ତାହା ସହଜରେ ଜଣା ପଡ଼ିଯିବ । ଆପଣ ବାପା, ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କର ନିଶ୍ଚୟ ହୃଦୟ ଅଛି ।'' ଏହି ସମୟରେ ତାଙ୍କର ଜ୍ୱାଇଁ କୁଆଡ଼୍ ଆସି ସେଠାରେ ପହଞ୍ଚିଗଲେ । ଶଶୁରଙ୍କ ହୃଦୟ ଉପରେ ଆଲୋଚନା ହେଉଥିବାର ଦେଖି ସେ ସେଥିରେ ଉତ୍ସାହିତ ହୋଇ ଯୋଗ ଦେଇଁ ଦେଉଁ କହିଲେ —ଶଶୁରଙ୍କ ହୃଦୟଟି ଗ୍ରଉଲକେଲର ଲୁହାପରି ଟାଣ । ସେଥିରୁ ତାଙ୍କ ନିଜ ପୁଅଙ୍କ ଅପେକ୍ଷା ଜୋଇଁମାନେ ବେଶୀ ଲାଭ ଉଠାଇ ପାରିବେ ।

ଏ କଥାରେ ହୃଦାନନ୍ଦବାବୁଙ୍କ ପୁଅମାନେ ଉତ୍‌କ୍ତ ହୋଇ ଉଠି ଭଣୋଇଙ୍କୁ ପିଟିବାକୁ ଯାଉଥିଲେ କି କଅଣ କେଜାଣି, ମାତ୍ର ହୃଦାନନ୍ଦବାବୁ ହୋଃ—ହୋଃ ହୋଇ ବଡ଼ପାଟିରେ ହସି ଉଠୁ ଉଠୁ ପୁଣିଥରେ ଆରାମ ଚଉକିରେ ଆରାମରେ ଶୋଇପଡ଼ି ସମୁଧି ଚରଣ-କିଙ୍କରଙ୍କ ଆଡ଼କୁ କଣେଇ କଣେଇ ଚାହିଁ କହିଲେ ହସି ହସି—

''ଦେଖିଲ ତ ସମୁଧି—ଦେଖିଲତ ! ମୋ 'ହୃଦୟ'ଟା କେମିତି ମୋର ପିଲାମାନେ ବୁଝୁଛନ୍ତି ଦେଖିଲତ ! ଟିକଏ ତମ ସମୁଦୁଣୀଙ୍କୁ ବୁଝାଇ ଦେଲ । ସେ ଜମା ବୁଝୁ ନାହାନ୍ତି ?''

ଅଧ୍ୟାପକ ସମୁଧି କହିଲେ—

''ଏଇ ଦେଖା ଦେଖିରୁ କଣ ମିଳିବ ସମୁଧି, ଦେବତାମାନେ ସ୍ତ୍ରୀମାନଙ୍କ ହୃଦୟ କଳି ପାରନ୍ତି ନାହିଁ । ଆଉ ସ୍ତ୍ରୀ ଲୋକମାନେ ବି ତୁମ ହୃଦୟ କଳିପାରନ୍ତି ନାହିଁ ।

ହୃଦାନନ୍ଦ ବାବୁ ଆନନ୍ଦରେ ହସିଲେ ଠିକ୍ ହୃଦୟବାନ ଲୋକ ଭଳି—

Digitized by srujanika@gmail.com

ହଃ ହଃ ହଃ । ବୁଝିଲ ସମୁଧା ! ତୁମ ହେମୁଦୁଣୀ ଅଜଯାଏ ମୋ ହୃଦୟଟି କୋଉଠି ଅଛି ଖୋଜି ବୁଲୁଛନ୍ତି । ଅଥଚ—ତାଙ୍କର ମନେ ନାହିଁ—ସେ କୋଉଦିନ ମୋ ହୃଦୟଟିକୁ ମୋଠାରୁ ଛଡ଼େଇ ନେଇ ତାଙ୍କ ଭିତରେ କୋଉଠି ଗୁଞ୍ଜି ଦେଇଛନ୍ତି । ଏଭ ତାକୁ ଖୋଜି ପାଉନାହାନ୍ତି ।

ଉନ୍ମାଦିନୀ ଦେବୀ ସମୁଧାଙ୍କ ହାତକୁ ଆଉ ଖଣ୍ଡିଏ ପାନ ବଢ଼ାଇ ଦେଇ ହସି ହସି କହିଲେ—

ପାଇଛି— ପାଇଛି—ଖୋଜି ପାଇଛି । ତୁମର ହୃଦୟ ବୋଲି ଯାହାକୁ ଚୋରଇ ନେଇ ମୋ ଅଣ୍ଟାରେ ଖୋଷି ଦେଇଥିଲ—ତାହା ହେଉଛି ଦେଖ--ପଥର ଗୋଟାଳଟିଏ ଛଡ଼ା ତା ଆଉ କିଛି ନୁହେଁ ।

ହୃଦାନନ୍ଦବାବୁ ଚଟାପଟ ସେ ପଥର ଗୋଟାଳଟିକୁ ସ୍ତ୍ରୀଙ୍କ ହାତରୁ ନେଇ ତାକୁ ହାତରେ ସାଉଁଳି ସାଉଁଳି କହିଲେ—ଓ ! ଏଇ ତେବେ ସେଇ, ଯାହାକୁ କହନ୍ତି ହୃଦୟ !!



Digitized by srujanika@gmail.com

# ଡାକ୍ତରଙ୍କ ଡକାଇତି

•

ବିଖ୍ୟାତ ପ୍ରାବନ୍ଧିକ ଜେ. ବି. ପ୍ରିଷ୍ଟ୍‌ଲି ମନୁଷ୍ୟ ସମାଜକୁ ଦୁଇ ପ୍ରଧାନ ଶ୍ରେଣୀରେ ବିଭକ୍ତ କରିଛନ୍ତି । ଅର୍ଥାତ୍ ବାଚାଳ ଏବଂ ଗମ୍ଭୀର । ମାତ୍ର ପ୍ରିଷ୍ଟଲି ମହାଶୟଙ୍କ ବିଭାଗୀ-କରଣ ତର୍କଶାସ୍ତ୍ର ସମ୍ମତ ହୋଇଥାନ୍ତା, ଯେବେ ସେ ମନୁଷ୍ୟ ସମାଜକୁ ଡକ୍ଟର ଅର୍ଥାତ୍ ଚିକିତ୍ସକ ଗୋଷ୍ଠୀ ଏବଂ ପେସେଣ୍ଟ୍‌ସମାନେ ରୋଗୀଗୋଷ୍ଠୀ,—ଏଇ ଦୁଇ ପ୍ରଧାନ ଶ୍ରେଣୀରେ ବିଭକ୍ତ କରି ଯାଇଥାନ୍ତେ । କାରଣ ଆମେ ଦିନେ ଟଙ୍କା ରୋଜଗାର କରିବାକୁ ପରିଶ୍ରମ କରି ରୋଗରେ ପଡ଼ିବୁ । ଆଉ ଦିନେ ଆମକୁ ଔଷଧ ଦେଇ ରୋଜଗାର କରିବେ । ୧୮ଶ ଶତାବ୍ଦୀର କବି ଓ ପ୍ରାବନ୍ଧିକ ଗୋଲ୍‌ଡ଼ସ୍ମିଥ ଏଇ ଡାକ୍ତରଙ୍କ ବିରୁଦ୍ଧରେ ଯେଉଁ ପ୍ରବନ୍ଧଟି ଲେଖିଛନ୍ତି ସେଇଟା କୁଆଡ଼େ ଗୋଲଡସ୍ମିଥଙ୍କର ଡାକ୍ତରୀ ପରୀକ୍ଷାରେ ବାରମ୍ବାର ଫେଲ ହେବାର ଫଳ ବୋଲି ଲର୍ଡ ମାକ୍‌ଲେ ତାଙ୍କ ଜୀବନୀରେ ଲେଖି ଯାଇଛନ୍ତି । ମାତ୍ର ମୁଁ ଡାକ୍ତରଙ୍କ ବିରୁଦ୍ଧରେ ଲେଖୁଚି ବୋଲି କେହି ଯେପରି ମନେ ନ କରନ୍ତି ଯେ ମୁଁ ଡାକ୍ତରୀ ପରୀକ୍ଷାରେ ଫେଲହୋଇ ଏଭଳି ଲେଖୁଛି ।

ତଥାପି ଆପଣମାନେ ଯାହା କହନ୍ତୁ, ଏଇ ଡାକ୍ତରମାନଙ୍କୁ ଦେଖିଲେଇ ମୋର ଡକାୟତଙ୍କ କଥା ମନେ ପଡ଼େ । ଠିକଏ ଦିବ୍ୟ ଦୃଷ୍ଟିରେ ଦେଖିଲେ ଜାଣି ପାରିବେ, ଡକାୟତଙ୍କ ଠାରୁ ବି ଡାକ୍ତରମାନେ ଆମ ସମାଜର ବେଶି କ୍ଷତିକାରକ । ଡକାୟତଙ୍କ ଛୁରି ଅପେକ୍ଷା ଡାକ୍ତରଙ୍କ ଛୁରି ବେଶୀ ନରହତ୍ୟା କରୁଚିକି ନାହିଁ ଏ କଥା ଖବର

Digitized by srujanika@gmail.com

କାଗଜରୁ 'ଡାକ୍ତରଖାନାର ଜନ୍ମ ମୃତ୍ୟୁ' ଶୀର୍ଷକ ସମ୍ବାଦରୁହିଁ ବେଶ୍ ଜଣାପଡ଼ିବ । ଓକାଲ୍ମୁତିଆର ଛୁରୀ-ଚାଳନ ଯେପରି ଅର୍ଥକାଟି, ଡାକ୍ତରଙ୍କ ଛୁରୀ ଚାଳନ ବି ସେହିପରି ଅର୍ଥକାଟି । ଓକାଲ୍ମୁତିଆର ଛୁରୀ ଯେପରି ନିର୍ଜ୍ଜନ ସ୍ଥାନରେ ଚଳେ, ଡାକ୍ତରଙ୍କ ଅପରେସନ ଥେଟରକୁ ବି ସେହିଭଳି ଆମ ଭଳିଆ ଲୋକଙ୍କ ପକ୍ଷେ ପ୍ରବେଶ-ନିଷିଦ୍ଧ । ତେବେ ପ୍ରଭେଦ ଏତିକି ଓକାଲ୍ମୁତି ମଣିଷ ମାରି ରୋଜଗାର କରିବାକୁ ମଣିଷ ମାରନ୍ତି ଏବଂ ଡାକ୍ତର ମଣିଷକୁ ବଞ୍ଚାଇ ରୋଜଗାର କରିବାକୁ ମଣିଷ ମାରନ୍ତି ।

ମୋ ମାଉସୀ କହୁଥିଲେ—ରାଜ୍ୟରେ ଡାକ୍ତର ଯେତିକି ବେଶୀ ହେଉଛନ୍ତି, ଡାକ୍ତରଖାନା ଯେତିକି ବେଶୀ ହେଉଚି, ସେତିକି ନୂଆ ନୂଆ ରୋଗ ଦିନକୁ ଦିନ ବାଢ଼ାରୁଚି । ଖାଲି ମୋ ମାଉସୀ ନୁହନ୍ତି, ବହୁ ବଡ଼ ବଡ଼ ଲୋକେ ବି ଡାକ୍ତରଙ୍କୁ ଆକ୍ଷେପ କରି ପଦେ ପଦେ ଶୁଣାଇ ଯାଇଛନ୍ତି । ଖାଲି ବଡ଼ ଲୋକଙ୍କ କହିବା ଯୋଗୁଁ ନୁହେଁ—ମୋର ଡାକ୍ତରମାନଙ୍କ ବିଷୟରେ ବହୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଅନୁଭୂତି ଅଛି ବୋଲି ମୁଁ ସେମାନଙ୍କୁ ଓକାଲ୍ମୁତି କହୁଛି । ମୋର ମାତୁଳପୁତ୍ରଭ୍ରାତା ଡାକ୍ତର ନବଘନ ସେନାପତି ଏମ୍. ବି.ବି.ଏସ୍‌ଙ୍କ ଠାରୁ ଆରମ୍ଭକରି ଡାକ୍ତର ପେପାରେଟୀ; ଏମ୍. ବି. ବି. ଏସ୍. ଏଫ, ଆର, ଏସ, ଆଇ, ଯେ, କେ, ଏଲଙ୍କ ପର୍ଯ୍ୟନ୍ତ ଏବଂ ଆମଗାଁ କବିରାଜ ହାଡ଼ୁ ପୃଷ୍ଟିଙ୍କଠାରୁ ଆରମ୍ଭ କରି ଡାକ୍ତର ଏଫ୍ ଚୌଧୁରୀ ଏଚ, ଏମ, ବି, ବି, ଟି, ଏମ, କେ, ଟି ଆଇ ( ହୋମିଓ ) ଆଦି ଯେତେ ତଥାକଥିତ ରୋଗର ଯମ ମାନଙ୍କ ସଂସ୍ପର୍ଶରେ ଆସି, ସେଥିରୁ ମୋର ଦୃଢ଼ ଧାରଣା ହୋଇଛି ଯେ ଏମାନେ ରୋଗର ଯମ ନୁହନ୍ତି ବରଂ ରୋଗୀର ଯମ । ଆପଣଙ୍କଠାରେ ରୋଗ ନଥିଲେବି ଏମାନେ ରୋଗ ଭର୍ତ୍ତି କରିଦେବେ । ତଦୁପରି ଏଲୋପାଥି, ଆୟୁର୍ବେଦ, ଢ଼ଚେନ, ବାୟୋକେମିକ ଏବଂ ଆହୁରି ଯେତେ ଭୁଟୁକା ଚିକିତ୍ସା ବିଜ୍ଞାନର ବିଭାଗ ରହିଛି—ପୁଣି ସେ ସବୁ ଭିତରେ ଏତେ ମୌଳିକ ବିଭେଦ ରହିଛି ଯେ ରୋଗୀପକ୍ଷେ ରୋଗ

Digitized by srujanika@gmail.com

ଯନ୍ତ୍ରଣାଠାରୁ କୌଣସି ଏକ ବିଭାଗର ଚିକିତ୍ସାଧୀନରେ ରହିବା କୌଣସି ଗୁଣେ ଶ୍ରେୟସ୍କର ନୁହେଁ । ଏଲୋପାଥିରେ ଔଷଧର ଯେଉଁ ଅଂଶ ରୋଗ ଭଲ କରିବାରେ ପ୍ରଯୁକ୍ତ ହୁଏ, ହୋମିଓପାଥିରେ ତାହା ରୋଗ ବୃଦ୍ଧି କରିବାରେ ସାହାଯ୍ୟ କରେ । ପୁଣି ହୋମିଓ ଓ ଆୟୁର୍ବେଦୀୟ ଏବଂ ବାୟୋକେମିକ ଇତ୍ୟାଦି ସମସ୍ତଙ୍କ ହିଂସା ଯେମିତି ଏଲୋପାଥି ଉପରେ, ଏଲୋପାଥି ଡାକ୍ତର ବି ସେହିପରି ବାୟୋକେମିକ ଓ କବିରାଜର ମୁଣ୍ଡ ଫଟାଇବା ପାଇଁ ଯେତେ ଭୁଣ୍ଡି ଖର୍ଚ୍ଚ କରେ, ରୋଗ ଭଲ କରିବାରେ ତହିଁରୁ ଶତକଡ଼ା ଦଶ ଭାଗରୁ ଭାଗେମୁଣ୍ଡି ବ୍ୟସ୍ତ କଲେ ବି ବହୁତ କାମ ଦିଅନ୍ତା ।

ଆଜିକାଲି ଶ୍ରମବିଭାଗ ଯୁଗରେ ଡ଼ାକ୍ତର ମାନଙ୍କ ଭିତରେ ଯେପରି ଅତ୍ୟଧିକ ଭାବରେ ସ୍ପେସିଆଲାଇଜେକ୍‌ସନ ଚାଲିଲାଣି, ତାହାଦେଖି ହସ ନ ଲାଗିଲେ କାନ୍ଦିବା ଉଚିତ । ଥରେ ମୋର ଗୋଟିଏ ଆଖି ଖରାପ ହେବାରୁ ମୁଁ ଜଣେ ଆଖି ଡାକ୍ତରଙ୍କୁ ଚିକିତ୍ସାପାଇଁ ଅନୁରୋଧ କରନ୍ତେ – ସେ ପଚାରି ବସିଲେ —ଆପଣଙ୍କର କେଉଁ ଆଖିଟି ଖରାପ ? ମୁଁ ବାମ ଆଖିଟି ବୋଲି କହନ୍ତେ ସେ ଦୁଃଖିତ ହୋଇ କହିଲେ "ମୁଁ ଡାହାଣ ଆଖିର ବିଶେଷଜ୍ଞ, ଆଜ୍ଞା କ୍ଷମା କରିବେ ।" ଆଉ ଥରେ ମୋର ସ୍ତ୍ରୀ ତାଙ୍କର ଜଣେ ବାନ୍ଧବୀଙ୍କୁ ତାଙ୍କର ଘରୋଇ ଡାକ୍ତର କିଏ ବୋଲି ପଚାରନ୍ତେ ସେ କହିଲେ—"ମୁଁ କହିପାରିବିନି, କାରଣ ଆଗେ ଡାକ୍ତର ବେନ୍ଥୁରି ଆମର ଘରୋଇ ଡ଼ାକ୍ତର ଥିଲେ । କିନ୍ତୁ ମୋ ବାପା ପାକସ୍ଥଳୀ, ମାଆ ଆଖି, ସାନ ଭଉଣୀର ଗଳା, କଲେଜ ପଢୁଆ ଭାଇ ହୃଦୟ ଓ ମୁଁ ମସ୍ତିଷ୍କ ବିଶେଷଜ୍ଞଙ୍କ ପାଖକୁ ଯାଉଛୁ ।"

ମୋର ଜଣେ ବନ୍ଧୁ ତାଙ୍କ ଘରୋଇ ଡାକ୍ତରଙ୍କର ପ୍ରଶଂସା କରି କହିଲେ—ଆମ ଡାକ୍ତର ଭାରି ଭଲ । କାରଣ ଅନ୍ୟ ଡାକ୍ତର ଗୁଡ଼ାକ ରୋଗ ଚିହ୍ନିବାରେ ଏତେ ଗଧ ଯେ, ସେମାନେ ଧରନ୍ତି, ଟାଇଫଏଡ଼ର

Digitized by srujanika@gmail.com

ଚିକିତ୍ସା କରନ୍ତି—କିନ୍ତୁ ରୋଗୀ ନିଉମୋନିଆରେ ମରେ । କିନ୍ତୁ ଆମର ସେ ଡାକ୍ତର, ବିଚକ୍ଷଣ ତାଙ୍କର ଡାଏଗୋନିସ—ସେ ଟାଇଫଏଡ଼ରେ ଚିକିତ୍ସା କଲେ ରୋଗୀ ସେଇ ଟାଇଫଏଡରେ ମରିବ ।' ମୁଁ କହିଲି- ଆପଣଧନ୍ୟ--ଆପଣଙ୍କ ଡାକ୍ତର ବି ଧନ୍ୟ । 'କିନ୍ତୁ ସବୁ ରୋଗୀ ମରିବାକୁ ଚାହାନ୍ତି ନାହିଁ,

ଖାଲି ଏତିକି ନୁହେଁ, ଦୁର୍ଭାଗ୍ୟବଶତଃ ଆପଣ ଯଦି କୌଣସି ହସପିଟାଲରେ କେବେ ପଡ଼ିଥାନ୍ତି, ତେବେ ଜାଣିପାରିବେ ହସପିଟାଲ ଗୁଡ଼ାକ କୌଣସି ଗୁଣରେ ଉନ୍ନତ ଧରଣର ଶ୍ମଶାନଠାରୁ କମ୍ ଭୟଙ୍କର ନୁହେଁ । ଆପଣଙ୍କର ମନେ ହେବ, ସେଠାରେ ରୋଗୀଗୁଡ଼ାକ ସମସ୍ତେ ଜିଅନ୍ତା ମଢ଼ା ବେହେରାଗୁଡ଼ାକ ମାଲଭାଇ, ନର୍ସଗୁଡ଼ିକ କର୍ସ--ଏବଂ ଡାକ୍ତର ଗୁଡ଼ିକ କ୍ଷୁଦ୍ର ବୁଦ୍ଧିନାମା କ୍ଷୁଧାର୍ତ୍ତ ଜମ୍ବୁକ । ଆପଣଙ୍କୁ ସବୁଠାରୁ ବେଶୀ ଖରାପ ଲାଗିବ ଯେତେବେଳେ ପାଞ୍ଚ ଛଅ ଜଣ ଡ଼ାକ୍ତର ଓ ଡାକ୍ତରୀ ଛାତ୍ର ଆପଣଙ୍କ ଶଯ୍ୟା ଚାରିପଟେ ଛିଡାହୋଇ ଆପଣଙ୍କ ରୋଗ ସମ୍ବନ୍ଧରେ ମୌଖିକ ଗବେଷଣା ଚଳାଇଥିବେ—

ଆଜି କାଲି ଡାକ୍ତରୀ ପଢ଼ିବା ପାଇଁ ଛାତ୍ର ଛାତ୍ରୀ ମହଲରେ ଯେଉଁ ବଡ଼ ଝିଙ୍କ ଦେଖା ଯାଉଛି, ତାର ଦୁଇଟି ମୁଖ୍ୟ କାରଣ । ଛାତ୍ରୀମାନଙ୍କର ଡାକ୍ତରୀ ପଢ଼ିବାର ପ୍ରଧାନ କାରଣ କ'ଣ ବୋଲି ମୋର ଜଣେ ନାରୀ ବନ୍ଧୁଙ୍କୁ ପଚାରିବାରୁ ସେ କହିଲେ ଯେ ଡାକ୍ତରୀ ପଢିଲେ ସେ-ବିକା ହେବାର ସୁଯୋଗ ମିଳିବ । କାରଣ ପତ୍ନୀଟି ଡାକ୍ତର ହେଉ ଏ କଥା କେଉଁ କୁଟମ୍ବୀଜନ ନ ଚାହେଁ ? କିନ୍ତୁ ମୋର ମାତୁଳ ପୁତ୍ର ମାନନୀୟ ଶ୍ରୀ ନବଘନ ସେନାପତି ଏମ. ବି. ବି. ଏସଙ୍କୁ ମୁଁ ଡାକ୍ତରୀ ପଢ଼ିଲ କାହିଁକି ବୋଲି ପଚାରନ୍ତେ ସେ କହିଲେ— "ଆଉକିଛି

Digitized by srujanika@gmail.com

କାରଣ ନାଲିରେ ଲାଇ--ତୋ ହଜଜ କରେ ମୋ ନାମ ପୂର୍ବରୁ ଡଅାର (Dr ) ବୋଲି ମୁହଁରେ ଦେଲେ ତାଙ୍କୁ ।”

କଥା କହିବାରେ କି କ'ଣ ଆପଣ ଡ଼ାକ୍ତରଙ୍କୁ ପାରିବେ ? ସେମାନେ ଏମିତି କଥା କହିବେ ଯେ ଆପଣ ଯେତେ ବୁଦ୍ଧିଆ ହୋଇଥାନ୍ତୁ, ଆପଣଙ୍କ ପାଟି ବନ୍ଦ ଚୁପ୍ ହୋଇଯିବ । ଥରେ ମୋର ଚିକିତ୍ସକଙ୍କୁ ମୁଁ କହିଲି--“ବନ୍ଦ କରନ୍ତୁ ଡ଼ାକ୍ତର । ମୁଁ ଆଉ ଔଷଧ ଖାଇବି ନାହିଁ । ଆପଣଙ୍କ ଚିକିତ୍ସା ବିଜ୍ଞାନ ଉପରେ କମ୍ବା ଆପଣଙ୍କ ଉପରେ ମୋର ଟିକିଏ ବିଶ୍ୱାସ ନାହିଁ । ମୋ ଡାକ୍ତରଟି ସାଙ୍ଗେ ସାଙ୍ଗେ ହସି ହସି ମୋ ପାଟି ବନ୍ଦକରି ଦେଲେ “କିଛି ଚିନ୍ତାନାହିଁ ବନ୍ଧୁ, ବଳଦ କି କ'ଣ ଭେଟେରିନାରି ଡାକ୍ତରଙ୍କୁ ବିଶ୍ୱାସ କରେ ? ମାତ୍ର ଔଷଧ ଖାଇଲେଇ ବଳଦ ଆରୋଗ୍ୟ ହୁଏ ।”

ତଥାପି ଚଲାଖିରେ କଥା କହୁ କହୁ ବେଳେବେଳେ ସେମାନଙ୍କ ବୋକାମୀଟା ଧରା ପଡ଼ିଯାଏ, ସେକଥା ସେମାନେ ଜାଣି ପାରନ୍ତି ନାହିଁ । ମୋର ଗଣିତ ଅଧ୍ୟାପକଙ୍କୁ ଥରେ କାନ୍‌ସର ରୋଗର ଚିକିତ୍ସା କରୁ କରୁ ଜଣେ ଡାକ୍ତର ତାଙ୍କୁ କହିଲେ--“ଆଜ୍ଞା କିଛି ଚିନ୍ତା ନାହିଁ ଆପଣ ବିଶ୍ୱାସ କରନ୍ତୁ ଆପଣ ଭଲ ହୋଇଯିବେ । କାରଣ, ପ୍ରତି ଦଶଜଣରେ ଜଣେମାତ୍ର ଏ ରୋଗରେ ଭଲହୁଏ । ମୋ ହାତରେ ନଅଜଣ ରୋଗୀ ମଲେଣି ଏ ରୋଗରେ ଆଜି ପର୍ଯ୍ୟନ୍ତ । ଆପଣ ହେଉଛନ୍ତି ଦଶମ ବ୍ୟକ୍ତି । ତେଣୁ ଆରୋଗ୍ୟ ଗ୍ୟାରେଣ୍ଟିଡ୍ ଆଜ୍ଞା,ଆପଣ ନିଶ୍ଚିନ୍ତ ଥାଆନ୍ତୁ ।”

ଆଉଥରେ ଜଣେ ଡାକ୍ତର ମୋର ବାପାଙ୍କୁ କହିଲେ, ଏ ଔଷଧ ଅତି ଚମତ୍କାର ଆଜ୍ଞା- ବିଶ୍ୱାସ କରନ୍ତୁ, ମାତ୍ର ଗୋଟିଏ ଡୋଜ୍‌ରେ ଆପଣ ଆରାମ ହୋଇଯିବେ । ଆଜିକୁ ପଚିଶ ବରଷ ହେଲାଣି କେହି ଏ ଔଷଧ ବିରୁଦ୍ଧରେ କହିବାର କେହି ଶୁଣିନି । ତେବେ ଏଇଟା କଣ

Digitized by srujanika@gmail.com

ଜଣାପାଉଛି କହିଲେ ? ମୋର ବୁଦ୍ଧିମାନ ବାପା ହସି ହସି ଉତ୍ତର ଦେଲେ--"କ'ଣ ଆଉ ଜଣାଇବ ଆଜ୍ଞା ? ମୁର୍ଦ୍ଦାର ମାନେ ଯେ କଥା କହନ୍ତି ନାହିଁ--ଏଇ ମହାନ ହିଁ ଚିରନ୍ତନ ସତ୍ୟଟାକୁଇ ଜଣାଉଛି--ଆଉ କଅଣ ?"

ଡାକ୍ତରଙ୍କ ଲୋଭ ଦେଖିଲେ ବି କିଏ ବିଶ୍ୱାସ କରିବ ଯେ--ଏମାନେ ସମାଜର ସେବା କରିବା ପାଇଁ ବ୍ୟବସାୟ ଫାନ୍ଦିଛନ୍ତି ? ଥରେ ମୋର ଭଉଣୀ ଡେଲିଭରି କେସ୍‌ରେ ମରିଯିବାପରେ—ତାର ଦୁଇ ଦିନର ପିଲାଟି ମରିଗଲା । ମନ ଦୁଃଖରେ ମୁଁ ରାସ୍ତାରେ ବୁଲୁଚି । ମୋର ଭଉଣୀର ଡାକ୍ତର ଷ୍ଟେଥିସ୍‌କୋପ ବେକରେ ଝୁଲାଇ ମୋ ଭଉଣୀ ଘରଆଡ଼କୁ ଦୌଡ଼ୁଛନ୍ତି । ବଡ ଦୁଃଖ ଓ ରାଗରେ କହିଲି—"ଆଉ କୁଆଡ଼େ ଡାକ୍ତର ? ମାଆ ତ ମଲା—ପିଲା ବି ମଲା—ଆଉ କାହାକୁ ବଞ୍ଚାଇବାକୁ ଧାଇଁଚ ? ନାଥୁଲୁ ନାଥୁଲୁ ହୋଇ ମୋଟା ଡାକ୍ତରଟି ଓଉ ଫଣାପରି ଫାଲୁକା ଗାଲରେ ଟିକେ ସ୍ମିତ ଉକୁଟାଇ କହିଲେ—"ଆହା ମା ମଲା ସତ ପିଲାଟିବି ମରିଗଲା, କିନ୍ତୁ ପୁଣି ବାପକୁତ ବଞ୍ଚାଇବା ମୋର କର୍ତ୍ତବ୍ୟ ?"

ମୋର ବାଲ୍ୟବନ୍ଧୁ ଡାକ୍ତର ଫକୀର କରଙ୍କୁ ମୁଁ ପଚାରିଲି "ଆଜ୍ଞେ ଭଲ ଡାକ୍ତରଟିଏ ହେବା ନିଶ୍ଚୟ ଖୁବ୍ କଠିନ କଥା ।"ସେ କହିଲେ କିଛି କଠିନ କଥା ନୁହେଁ—ଭାରି ସହଜ । ଭଲ ଡାକ୍ତରଟିଏ ହେବାକୁ ହେଲେ ସର୍ବଦା ଦୁଇଟି କଥା ଉପରେ ଦୃଷ୍ଟି ଦେବାକୁ ପଡ଼ିଥାଏ । ପ୍ରଥମେ ପ୍ରେସକ୍ରିପସନ୍‌ଟି ଲେଖିବ ଅତି ଗେଙ୍ଗେରା ମେଙ୍ଗେରା ଭାବେ ଯେମିତି କେହି ଭଲକରି ପଢ଼ିପାରୁ ନଥିବେ; ମାତ୍ର ବିଲ୍‌ଟିକୁ ଅତି ସୁନ୍ଦର କାଗଜରେ ପରିଷ୍କାର ଭାବେ କାଳିରେ ଲେଖିବ । ବାସ୍, ଏତିକି କରିପାରିଲେଇ ତୁମେ ଗୋଟିଏ ଭଲ ରୋଜଗାରି ଡାକ୍ତର ଭାବେ ଉତୁରି ପାରିବ ।

Digitized by srujanika@gmail.com

ଆଉ ଥରେ ମୋର ଅନ୍ୟଜଣେ ବନ୍ଧୁ ଡାଃ ହୃଷୀକେଶ ପରିଡାଙ୍କ ସଙ୍ଗେ ଡାକ୍ତରି ଶାସ୍ତ୍ରର ଅପରିପୂର୍ଣ୍ଣତା ସମ୍ବନ୍ଧେ ତର୍କ କରୁ କରୁ ମୁଁ କହିଲି —"ଆହେ ସାଆନ୍ତେ, ତୁମରି ସର୍ଜେରି ଆଗ ଆମ ଶରୀରର ସବୁଯନ୍ତ୍ର ସମ୍ବନ୍ଧେ ପୂର୍ଣ୍ଣ ଜ୍ଞାନ ଅର୍ଜ୍ଜନ କଲଣିନା ?" ହୃଷୀବାବୁ ଅତି ମାତ୍ରାରେ ଭାବ-ପ୍ରବଣ ହୋଇ ରାଗିଯାଇ କହିଲେ-"ଆରେ ଚଲ୍-ଆମଗ୍ରେଙ୍କର ଆନାଟମୀ ପୁସ୍ତକରେ ମନୁଷ୍ୟ ଶରୀରରେ ଯେତେ ହାଡ଼ର ନାମଅଛି ସେତେ ହାଡ଼ ଆଗ ତୁମ ମଣିଷ ଦେହରେ ଅଛିନା ?" ହୃଷୀବାବୁଙ୍କ କଥା ପଦ ସତହୁଏ ତେବେ ମହାବିଜ୍ଞାନୀ ଗ୍ରେଙ୍କର ବି ମନୁଷ୍ୟଶରୀର ସମ୍ବନ୍ଧେ ଜ୍ଞାନକୁ ତାରିଫ କରିବାକୁ ହେବ ନିଶ୍ଚୟ ।

ଯମଦୂତଙ୍କର ହେଲେ ଦୟା ଅଛି । ମାତ୍ର ଡାକ୍ତରଙ୍କ ତୁଣ୍ଡରେ "ଦୟାପଦ" ବିଧାତା ଦେଇନାହାଁନ୍ତି । ଥରେ ମୋର ଦଶ ବର୍ଷର ସାନଭାଇକି ମୁଁ ଦାନ୍ତ ଡାକ୍ତରଙ୍କ ପାଖକୁ ନେଲି । ତା'ର ଗୋଟିଏ ମାତ୍ର ଦାନ୍ତ ଉପୁଡ଼ା ହେଲା । ଡାକ୍ତର କିନ୍ତୁ ପାଞ୍ଚଟଙ୍କାର ବିଲ୍ ଦେଲେ, ମୁଁ କହିଲି ଏ କିପରି କଥା ଆଜ୍ଞା—ଆପଣ ଗୋଟିଏ ଦାନ୍ତକୁ ଗୋଟିଏ ଟଙ୍କା କହିଥିଲେ ନା ? ଡାକ୍ତର ମୁହଁଟାକୁ ଜଳନ୍ତା ଚୂଲି ମୁହଁପରି କହିଲେ—"ଏଇଟା ସେମିତିକା କଥା ମହାଶୟ, ମୁଁ ସେଇଆ କହିଥିଲି ସତ ମାତ୍ର ତୁମ ପିଲାଦାନ୍ତ ଉପୁଡ଼ାବେଳେ ଏତେ ଜୋରରେ ଚିତ୍କାର କଲା ଯେ, ମୋର ଆଉ ଚାରିଜଣ ଦାନ୍ତଉପୁଡ଼ା ରୋଗୀ ଭୟରେ ପଳାଇଗଲେ । ମୁଁ ବା ଆଉ କ'ଣ କହନ୍ତି ? ପାଞ୍ଚଟଙ୍କା ଦେଇ ଭାଇକି ଧରି ଆସିଲି । ପାଞ୍ଚଦିନ ପର୍ଯ୍ୟନ୍ତ ତାର ଦାନ୍ତମୂଳରୁ ପରିସ ଗଲାନାହିଁ ।

ଗଲାବର୍ଷ ମୋର ଘନିଷ୍ଠବନ୍ଧୁ ଡାକ୍ତର ସିଦ୍ଧେଶ୍ୱର ବିଦ୍ୟାଧର, ଯାହାଙ୍କ ସଙ୍ଗେ ଦୀର୍ଘ ଦଶଟି ମଧୁର ବର୍ଷ ମୁଁ କଟାଇଚି ଅନ୍ତରରେ, ତାଙ୍କ ପାଖରୁ ପାନେ ହଜମୀ ଔଷଧ ଖାଇ ମୁଁ ନମସ୍କାର ଜଣାଇ ଫେରିବାକୁ

Digitized by srujanika@gmail.com

ବସୁଚ—ସେ ମୋର ହାତକୁ ଗୋଟିଏ ବଲ୍ ବଢ଼େଇ ଦେଲେ । ପଇସାତ ନଥିଲା ପକେଟରେ—ତେଣୁ ହସି ହସି କହିଲି—"ଆହେ ବଲ୍ କ'ଣ ବଢ଼େଇ ଦଉଚ ହେ ? ଏତେ ଦିନର ବନ୍ଧୁତ୍ୱ……? ଆଉ କଣ କହି-ଥାନ୍ତି, ମାତ୍ର ଡାକ୍ତର ବିଦ୍ୟାଧର ଗମ୍ଭୀର ହୋଇ ଦାନ୍ତ ଚିପି କହିଲେ— "ହୁଁ ଯାହା କହିଲ ଯଥାର୍ଥ ମହାପାତ୍ରେ । ମାତ୍ର ଉପହାର କେବଳ ବନ୍ଧୁତ୍ୱ ରକ୍ଷା କରେ ବନ୍ଧୁ, ମାତ୍ର କୁଟୁମ୍ବିତା ରକ୍ଷା କରି ପାରେନା !:"

ଡାକ୍ତରଙ୍କ ବିଷୟରେ ମୁଁ ଯେତେକଥା କହିଲିଣି ସେ ସବୁ ଆପଣ-ମାନଙ୍କୁ ଗପପରି ଲାଗୁଥିବ—ମାତ୍ର ଏଗୁଡ଼ିକ ସତ୍ୟ । ପୃଥିବୀର ଜଣେ ଶ୍ରେଷ୍ଠ ଚିନ୍ତା ନାୟକ ବର୍ଣ୍ଣାଡ୍‌ସ ତାଙ୍କର ଫିଲଣ୍ଡ୍ରର (Phillandrar) ଓ ଡକ୍ଟରସ୍ ଡ଼ିଲେମା (Doctors' dilema) ନାଟକରେ ଡାକ୍ତରଙ୍କ ଡକାୟତି-ଗିରିକୁ ଯେମିତି ପଦାରେ ପକାଇ ଦେଇଛନ୍ତି, ସେଥିରେ କଣ୍ଢ଼ର ସବୁ ଡାକ୍ତର ଡକାୟତ ନୁହେଁ ବୋଲି ଡକା ପକାଇଲେବି ଆମେତ ଆମେ ଚକାଡ଼ୋଳାବି ସେ ଡକା ଶୁଣିବେ ନାହିଁ । ଆଜିକାଲି ଡାକ୍ତରୀ ଶାସ୍ତ୍ରରେ ଅପରେସନ ହେଉଚି ବଡ଼ କଥା, ମାତ୍ର ସେ ନିଜେ ଅସ୍ତ୍ର ଚିକିତ୍ସାର ସାହାଯ୍ୟ କଲେବି ଚିରଦିନ ଅପରେସନ ବିରୋଧୀ । ଡକ୍ଟରସ ଡ଼ିଲେମା ନାଟକରେ ବର୍ଣ୍ଣାଡ଼ସ ସର୍ଜନ କାଟଲର ଓ୍ୱାଲପୋଲଙ୍କୁ ଯେପରି ବ୍ୟଙ୍ଗ କରିଛନ୍ତି, ସେ କଥା ବେଙ୍ଗକୁ ବି ବାଧିବ । ସଅଙ୍କ ମତରେ ଟିକାଟା ବି ଗୁଣୀ ଗାରେଡ଼ିପରି ଗୋଟାଏ ଅଜ୍ଞାନ କୁସଂସ୍କାର । ଟିକା ନେଲେ ବି ସଂକ୍ରାମକ ରୋଗରୁ ରକ୍ଷା ପାଇବା ଅସମ୍ଭବ ।

ଅପରେସନ ଅଧିକାଂଶ କ୍ଷେତ୍ରରେ ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ଏକ ଖିଆଲି ବିଳାସ । ଅପରେସନ ନହେଲେ ଯେପରି ଆଭିଜାତ୍ୟର ଗାରିମା ଅସମ୍ପୂର୍ଣ୍ଣ ରହିଯାଏ । ସଅଙ୍କର ନାଟକରେ ଅନ୍ୟତମ ମୁଖପାତ୍ର ଡାକ୍ତର ପାରିମୋରଙ୍କର ଚିକିତ୍ସା ଶାସ୍ତ୍ରରେ ଅଦ୍ଭୁତ ରୋଗର ଆବିଷ୍କାର

Digitized by srujanika@gmail.com

ଶୁଣିଲେ ରୋଗୀର ବି ରୋଗ ସମ୍ବନ୍ଧେ ସନ୍ଦେହ ଆସିଯିବ । ଡାକ୍ତର ପାରମୋର ଯେଉଁ ନୂତନ ରୋଗର ଆବିଷ୍କାର କଲେ ତାର ନାମ ଦେଲେ "ପାରମୋର ରୋଗ" । ଏ ଅଦ୍ଭୁତ ରୋଗ ପୁଣି ଯାହାକୁ ହୁଏ, ତା' ପ୍ରକୃତରେ ପ୍ରତି ବର୍ଗଇଞ୍ଚ ସ୍ଥାନ କୋଟି କୋଟି ଅଦୃଶ୍ୟ ଜୀବାଣୁରେ ପରି-ପୂର୍ଣ୍ଣ ହୁଏ—ଏବଂ ଜୀବାଣୁଇ ରୋଗୀକୁ ବର୍ଷେ ଦି ବର୍ଷରେ ଖତମ କରି ଦିଅନ୍ତି । ନାଟକର ନାୟିକା ଜୁଲିଆଙ୍କର ବାପା କର୍ଣ୍ଣେଲ ହାଉେନଙ୍କ ଯକୃତରେ ଏଇରୋଗ ହୋଇଛି ବୋଲି ଡ଼ାକ୍ତର ପାରମୋର ଆବିଷ୍କାର କରନ୍ତି । ଫଳରେ ହାଉେନଙ୍କର ପାନ ଭୋଜନ ସଂଯତ କରାଗଲା ଏବଂ ସେ ଡ଼ାକ୍ତର ପାରମୋରଙ୍କ ତତ୍ତ୍ୱାବଧାନରେ ରହନ୍ତି । ଡ଼ାକ୍ତର କହିଲେ କଠିନ ରୋଗ ଯେତେ ଚିକିତ୍ସା କଲେବି ବର୍ଷକ ଭିତରେ ରୋଗୀର ମୃତ୍ୟୁ ଅନିବାର୍ଯ୍ୟ । ନାୟକ ଲିଓନାର୍ଡ ଗ୍ରୁଟରସ୍ କିନ୍ତୁ ଏଠି ବେଶୀ ଥଟ୍ଟା କରିଛି । ଡାକ୍ତର କହନ୍ତି, "ସେ ଆଉ ବର୍ଷେ ବଞ୍ଚିବେ ଏବଂ ଡ଼ାକ୍ତରଙ୍କୁ କୃତାର୍ଥ କରିବାକୁ ଅନ୍ତତଃ ରୋଗୀ ଆଉ ବର୍ଷକରୁ ବେଶୀ ବଞ୍ଚିବାକୁ ଚାହିଁବ ନି ।"

କିନ୍ତୁ ଅଘଟଣ ଘଟଣ ହେଲା । ଇଟାଲୀର ଜଣେ ପ୍ରସିଦ୍ଧ ଡାକ୍ତର ପ୍ରମାଣ କରି ଦେଖାଇଦେଲେ ଯେ, ପାରମୋର ବ୍ୟାଧି ସମ୍ପୂର୍ଣ୍ଣ କାଳ୍ପନିକ ଓ ହାସ୍ୟକର ଆବିଷ୍କାର । କ୍ରମେ କର୍ଣ୍ଣେଲ ହାଉେନ ସୁସ୍ଥ ହୋଇ ଉଠିଲେ । ମାତ୍ର ଇଟାଲିଆନ୍ ଡାକ୍ତରଙ୍କ ହାତରେ ପରାଜିତ, ଅପମାନିତ ଓ ଲାଞ୍ଛିତ ପାରମୋର ବ୍ୟାଧି ଆବିଷ୍କାରକ ଡ଼ାକ୍ତର ପାରମୋର କ୍ରୋଧ, ଅନୁଶୋଚନା, ଲଜ୍ଜା ଓ ଗ୍ଲାନିରେ ଚିତ୍କାର ଛାଡ଼ିଛନ୍ତି--

"ନା-ନା, ମୋ ଆବିଷ୍କୃତ ରୋଗ ସମ୍ପୂର୍ଣ୍ଣ ଭ୍ରମ ନୁହେଁ । ମୁଁ ଭଲ ଭାବେ ପରୀକ୍ଷା କରିବାକୁ ସମୟ ପାଇଲିନି । କେବଳ ତିନୋଟି କୁକୁର ଆଉ ଗୋଟିଏ ମାଙ୍କଡ଼ ଉପରେ ପରୀକ୍ଷା ଚଳେଇଚି ମାତ୍ର--"

Digitized by srujanika@gmail.com

ଏବଂ ଶେଷରେ ରାଗିଯାଇ କାନ୍ଦ କାନ୍ଦ ଗଳାରେ ପ୍ରତିଜ୍ଞା କରିଛନ୍ତି-- "କିନ୍ତୁ ନାଁ ନାଁ, ମୁଁ ଜଣେ ଇଟାଲୀୟ ହାତରେ ଏଭଳି ଅପମାନକର ଭାବେ ପରାଜିତ ହୋଇ ପାରିବି ନାହିଁ । ଇଟାଲୀକୁ ମୁଁ ନିଜେ ଯିବି--ପୁଣି ଥରେ ମୋର ରୋଗକୁ ଆବିଷ୍କାର କରିବି । ମୁଁ ଜାଣେ ଏ ରୋଗ ଅଛି । ମୁଁ ତାକୁ ଅନୁଭବ କରୁଛି ( ସେ ଅଛି ବୋଲି ), ମୁଁ ଏହା ପ୍ରମାଣ କରିବି--ନିଶ୍ଚୟ ପ୍ରମାଣ କରିବି--ପୃଥିବୀରେ ଯାବତୀୟ ମରଣଶୀଳ ପ୍ରାଣୀ--ଯଦି ତାର ଯକୃତ ମାତ୍ର ଥାଏ, ତେବେ ସମସ୍ତଙ୍କ ଉପରେ ମୁଁ ଆବିଷ୍କାର ପରୀକ୍ଷା ଚଳେଇବି । ନିଶ୍ଚୟ ଚଳେଇବି ! ! !"

ଅଦ୍ଭୁତ ବ୍ୟାଧି ଆବିଷ୍କାରକ ଡାକ୍ତର ପାରାମୋରଙ୍କର ଏହି ଗଳ୍ପ ଶୁଣିଲା ପରେ ରୋଗ ସମ୍ବନ୍ଧେ ଡାକ୍ତରଙ୍କ ଗାଲୁ ଗଳ୍ପ ଶୁଣିବାକୁ କାହାର ଭଲ ଲାଗିବ ? ବର୍ଣ୍ଣାଡ୍‌ସ ତାଙ୍କ "ଡକ୍ଟରସ ଡ଼ାଇଲେମା ନାଟକର ମୁଖବନ୍ଧରେ ଡାକ୍ତରଙ୍କୁ ଯେମିତି ଗାଳି ଦେଇଛନ୍ତି--ସେ କଥା କେତେକ ପଢ଼ିଥାଇ ପାରନ୍ତି !

ଜଣେ ବିଶ୍ୱବିଖ୍ୟାତ ଡାକ୍ତର ଜେ. ସି. ଲେଟ୍‌ସନ୍ (j. C. Lettson) ତାଙ୍କ ନିଜ ସମ୍ବନ୍ଧେ ଯାହା କହିଛନ୍ତି, ସେଥିରୁ ଡାକ୍ତରଙ୍କର ରୋଗ ଭଲ କରିବାର ଶକ୍ତି କେତେଦୂର, ତାହା ସହଜରେ ବୁଝାପଡ଼େ । ସେ କହନ୍ତି--

When Peoples ill,
They comes to I
I Physics bleeds, Sweets'em
Some times they lives
Some times they dies
What is that to I ?
I lets'em.......

Digitized by srujanika@gmail.com

ଅର୍ଥାତ—ଲୋକେ ପୀଡ଼ିତ ହେଲେ ସେମାନେ ମୋପାଖକୁ ଆସନ୍ତି ମୁଁ ତାଙ୍କୁ ଚିକିତ୍ସା କରେ—ଅପରେସନ୍ କରେ -ଆଉମଧୁର କଥା କହେ । କେବେ କେବେ ସେମାନେ ବଞ୍ଚନ୍ତି । କେବେ ବା ସେମାନେ ମରିଯାନ୍ତି । ମୋର ସେଥିରେ କି ଆସେ ଯାଏ ? ମୁଁ ସେମାନଙ୍କୁ ସେଇଥି ହେବାକୁହିଁ ଦିଏ ।

ଆଉଗୋଟେ କଥା-ଡାକ୍ତରଙ୍କ ଭିଟାମିନ୍ ଜାଲରେ ଯେ ପଡ଼ିଲି ସେ ବିଚରା ମଲା । ଆଜି ଭିଟାମିନ୍ ବି-କମପ୍ଲେକ୍ସ ଯଦି ତାଙ୍କ ପରାମର୍ଶାନୁସାରେ ଖାଇଲେ ତେବେ ଆର ମାସରେ ଭିଟାମିନ୍ "ଏ" ନିଶ୍ଚୟ ଆପଣଙ୍କ ଦେହରେ ଅଭାବ ହେବ ଓ ତା ଆର ମାସରେ ଭିଟାମିନ୍ 'ଡି' ଓ ଏହିପରି ବର୍ଷକ ବାରମାସ ଆପଣଙ୍କ ଦେହ କେବଳ ଭିଟାମିନ୍ ଅଭାବଟାକୁଇଁ ପୂରଣ କରି ଚାଲିଥିବ । ଆଉସବୁ ଡାକ୍ତର ଯଦି କହିବେ ଦୁଧରେ ଭିଟାମିନ୍ ଯେତେ ନାଇଁ-କାଞ୍ଜି ପାଣିରେ ସେତେ ଅଛି-କମ୍ଳା କମଳାରେ ଯେତେ ନାଇଁ ଭିଟାମିନ୍ ତାର ୧୦ ଗୁଣ ଅଛି ତେନ୍ତୁଳି ମଞ୍ଜିର ଧଳା ଅଂଶ ଭିତରେ କମ୍ଳା ଗୋଟିଏ ଅଁଳା କୋଳି ଖାଦ୍ୟପ୍ରାଣ ଧାରଣ କରିବାରେ ସାତୋଟି ସିଲେଟ କମଳା ସଙ୍ଗେ ସମାନ, ଅଥବା ପିତା ଶୁଖୁଆ ଓ କାଞ୍ଜି ଖାଇଲେ ମ୍ୟାଲେରିଆ ଜ୍ୱର ଛାଡ଼ିଯାଏ-ତେବେ ଆମକୁ ପୁଣି ପୌରାଣି କମେ ତାଙ୍କ କଥାକୁ ଅଭ୍ରାନ୍ତ ବୋଲି ଧରି ନେବାକୁ ହେବ ।

ଡାକ୍ତରୀ ଚିକିତ୍ସା ଶାସ୍ତ୍ରରେ ଚିକିତ୍ସା ପଦ୍ଧତିରେ ନୂଆ ନୂଆ ନିୟମ ବୋଲି ଯେପରି କହୁଛି ନାଇଁ-ଡାକ୍ତରୀ ଶାସ୍ତ୍ରକୁ ବି ସେହିପରି ବିଜ୍ଞାନ ସମ୍ମତ ବୋଲି ଭାବିବାକୁ ଆମ ବୁଦ୍ଧିକି କଷ୍ଟଲାଗେ । କାରଣ କାଲି ରାତିରେ ଯଦି ଆପଣଙ୍କୁ ଜ୍ୱର ହୋଇଥିଲା ତେବେ ଆପଣଙ୍କ ଡାକ୍ତର ନିଶ୍ଚୟ ଆପଣଙ୍କର ପାଣିପିଆ ଓ ଭାତଖିଆ ବନ୍ଦ କରିଥିବେ । ମାତ୍ର ଆଜି ଠିକ୍ ସକାଳେ ମୋତେ ଜ୍ୱର ହେଲା ଏବଂ ମୋର ଡାକ୍ତର ମୋତେ କହିଲେ—"ଯେତେ ଇଚ୍ଛା ପାଣି ପିଅନ୍ତୁ ଆଜ୍ଞା

Digitized by srujanika@gmail.com

ପେଟେ ମାଂସ ଘିଅ ବ ଖାଆନ୍ତୁ—କିଛି କ୍ଷତି ନାହିଁ — ମୁଁ ସେଇ ପୁରୁଣା ଡାକ୍ତର ନୁହେଁ ଯେ ଏଇ ଜ୍ୱର ହେଲାବୋଲି ମୁଁ ଆପଣଙ୍କ ଖାଇବା ପିଇବା ବନ୍ଦ କରିଦେବି ?

ଏହାଛଡ଼ା ଦେଖିଁଥିରେ ପ୍ରତ୍ୟେକ ଡାକ୍ତର ପ୍ରତ୍ୟେକ ଡାକ୍ତରଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନମତ ପୋଷଣ କରନ୍ତି — ସେ ପୁଣି କେଉଁ ବିଜ୍ଞାନରେ ଲେଖା ? (Doctors diffe·)

ତେଣୁ ଆମେ କହୁଁ — ଆହେ ଡାକ୍ତରମାନେ ! ତେମେ ସବୁ ଆଉ ନିଜକୁ ଯମ ବା ଈଶ୍ୱର ପ୍ରଚାର କରନାହିଁ । ଆମ ରୋଗର ସୁଯୋଗ ନେଇ ତେମେମାନେ ଭୋଗ କରିବ, ଏକଥା ଆଉ ଆମେ ସହିପାରିବୁ ନାହିଁ । ନିଉ ଟେଷ୍ଟାମେଣ୍ଟର ଲୁକ ଲିଖିତ ମଙ୍ଗଳ ସମାଚ୍ଚର ଚତୁର୍ଥ ଅଧ୍ୟାୟ ତବିଶ ଶ୍ଳୋକରେ ଯେଉଁ ବାଣୀ ଲେଖାହୋଇଛି — ତା'ପ୍ରତି ହେ ଡାକ୍ତରମାନେ, ଥରେ ଭଲ ଦୃଷ୍ଟି ଦିଅ । Physician heal thyself, ଅର୍ଥାତ୍ ହେ ଚିକିତ୍ସକ : ଆଗ ନିଜକୁ ଆରୋଗ୍ୟ କର ।

## ଉପସଂହାର

କିନ୍ତୁ ପାଠକେ, ଏତେ କଥା ଡାକ୍ତରଙ୍କ ବିରୁଦ୍ଧରେ କହିଗଲି ସିନା । ମାତ୍ର ଡ଼ାକ୍ତରଙ୍କୁ ଛାଡ଼ି ଆମ୍ଭର ଗତିନାହିଁ । କାରଣ ଏ ପୃଥିବୀରେ ଆମେ ସମସ୍ତେ ବଞ୍ଚିବାକୁ ଆସିଥାଇଁ । ତେଣୁ ଡ଼ାକ୍ତରଙ୍କ ପାଖରୁ ପ୍ରେସକ୍ରିପ୍‌ସନ୍ ନଆଣିଲେ ଡ଼ାକ୍ତର ବିଚାରା ବଞ୍ଚିବ କିପରି ? ପୁଣି ସେ ପ୍ରେସକ୍ରିପ୍‌ସନ ଅନୁସାରେ ଔଷଧ ନ କିଣିଲେ ଦୋକାନୀ ବଞ୍ଚିବ କିପରି ? କିନ୍ତୁ ଔଷଧ କିଣି ଆଣିଲା ପରେ — ସାଧୁ ସାବଧାନ — ସେ ଔଷଧ କେବେ ଖାଇବେ ନାହିଁଟି; କାରଣ ଆମେତ ଫେର ବଞ୍ଚିବାକୁ ଆସିଛୁ ଏ ପୃଥିବୀକୁ ?

*

Digitized by srujanika@gmail.com

# ବାହା ହବାର ବିପଦ

ଆପଣ କଣ ବାହା ହୋଇଛନ୍ତି ? ନାହିଁ ? ବେଶ୍ ବେଶ୍ ଭଗବାନଙ୍କୁ ଧନ୍ୟବାଦ୍ ଯେ ଆପଣ ଅବିବାହିତ । କିନ୍ତୁ ଏଇଟା ନିଶ୍ଚୟ ହୋଇପାରେ ଯେ ଆପଣ ପ୍ରେମରେ ପଡ଼ିଛନ୍ତି । ପଡ଼ିଛନ୍ତି ତ ? ନିଶ୍ଚୟ—ନିଶ୍ଚୟ । ଥରେ ଅଲବତ ଆପଣ ପ୍ରେମରେ ପଡିଛନ୍ତି । ତା ହେଲେ ତ ଆପଣଙ୍କ ନୈଶଆକାଶରେ ସବୁଦିନେ ପୂନେଇ ଚୂନ୍ଦ । ସବୁତାରା ଗୁଡ଼ାକ ଉଜ୍ଜ୍ୱଳ ଧ୍ରୁବ ତାରା । ବତାସରେ ସଙ୍ଗୀତ—ନିଃଶ୍ୱାସରେ ମଳୟ—ହସରେ ଜ୍ୟୋତ୍ସ୍ନା—କଥାରେ ଗୁଞ୍ଜନ—ପଦମର୍ମରରେ ମୁରଲୀ ମୂର୍ଚ୍ଛନା । ଆଃ—ଆଶ୍ଚର୍ଯ୍ୟ, ମଧୁର; ରୁଚିର, ସୁଟକର, ସୁନ୍ଦର ଏଇ ପ୍ରେମରେ ପଡ଼ିବାର ଅନୁଭୂତି । ସେ ହେଉଛନ୍ତି ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ ତରୁଣୀ—ହେଲେନ୍—ଗ୍ରେଟା ଗାର୍ବୋ—ଲିବଣ୍ୟବତୀ—ସୁରେୟା—ବା ଇନ୍ଦିରା ରମନଙ୍କପରି ଯାହାକିଛି ଗୋଟେ । ଆଉ ଆପଣତ ସହଜରେ ରୂପରେ କାର୍ତ୍ତିକ, କନ୍ଦର୍ପ, ଚନ୍ଦ୍ରଭାନୁ ଅବା ଦେବାନନ୍ଦ—ଗୁଣରେ ଅର୍ଜ୍ଜୁନ ନେହୁରୁ—ଗାଧୀନିଷ୍ଟିନ—ଜାକିରହୋସେନ୍ ବା ସେମିତି କିଛି—ଆଉ ସ୍ୱାସ୍ଥ୍ୟକଥା ତ ଗୁଡ଼ନ୍ତୁ—ଗାମାଙ୍କର ବୁଢ଼ା ଆଙ୍ଗୁଠି ଜଖମ କରି ଦେଇଛନ୍ତି, ଆମେରିକାର ବକ୍‌ସିଙ୍ଗ ଓସ୍ତାଦ ଜୋ ଲୁଇଙ୍କର ଗୋଟିଏ ଦାନ୍ତ ଭାଙ୍ଗି ଦେଇଛନ୍ତି ଆଉ ଉତ୍କଳ ଭୀମ ପଦ୍ମଚରଣଙ୍କ ପେଟକୁ ମୁଣ୍ଡି ଆଟାଏ ମାରି ମାସେପାଏ ତାଙ୍କୁ ବିଛଣାରେ ପକାଇ ରଖିଛନ୍ତି ! ଆଉ ଅଧିକା ବା କଣ କହିବା—ଯେହ୍ନି ଲକ୍ଷ-ଜନମନ-ହାରିଣୀ—ମୁନିମନ ମନନକାରିଣୀ, ମୁନିଜନ ମାନସ ହଂସୀ—କଲେଜ ଯୁବକ ହୃଦ୍‌ଗତଭାବଃ ସଦାବନ୍ଦିତା ସୁନ୍ଦରୀ ହାସ୍ୟିକାଟି ଆପଣଙ୍କର ପ୍ରେମରେ ପଡ଼ିଯାଇଛନ୍ତି ।

Digitized by srujanika@gmail.com

କିନ୍ତୁ ମାନନୀୟ ମହାଶୟ ! ଦୟାକରି ଆପଣଙ୍କର ଏଇ ସୁଂନର ବାଦଲ ମଝିରୁ ଟିକଏ ଚନ୍ଦ୍ର ବଦନ କାଢିଆଣି ବାହାର ଦୁନିଆକୁ ଚାହାନ୍ତୁ । ହଁ ହଁ କେବଳ ମିନିଟିକପାଇଁ ଆପଣଙ୍କ ପଡ଼ୋଶୀର ଆଡ଼କୁ ଦୃଷ୍ଟିପାତ କରନ୍ତୁ । ଠିକ୍ ଆପଣଙ୍କ ପ୍ରେମ ରାଜ୍ୟର ସେଇଭଳି—ଚାରିପଟେ ଉଦ୍ୟାନର ଆରପଟେ, ଆପଣଙ୍କ ପଡ଼ୋଶୀଙ୍କର ବୈବାହିକ ଜୀବନର ଥର୍ ମରୁଭୂମି । ଯେଉଁଠାରେ ସୁନେଇ ଚାନ୍ଦକୁ ରାହୁ ଗ୍ରାସିଛି—ମଳୟ ଯେଉଁଠି ଝଞ୍ଜାରୂପେ ବିକଟ କରୁଣ ଚିତ୍କାର କରେ—ଧୂମାଳ ବାଦଲ ଭିତରେ ତାରାଗୁଡ଼ିକ ନଇଁକି ମୁହଁ ଲୁଚାନ୍ତି—ସବୁ ଖାଲି ଶୁଖିଲା—ସବୁ ଦରମରା—ଉଦ୍‌ବେଗ ନାହିଁ—ଉତ୍ତେଜନା ନାହିଁ—ଜୀବନ ନାହିଁ—ଶୃଙ୍ଖଳା ନାହିଁ । ଆମର ପ୍ରିୟ କବିବୃନ୍ଦ ସେକ୍‌ସପିଅରଙ୍କ ଭାଷାରେ—

Men are April, when
they woo,

December when
they wed.

ପ୍ରକୃତରେ ଯଦି ଆପଣ ସବୁଦିନେ ନୀଳ ଆକାଶରେ ଘୁରିନେଇ ଚାନ୍ଦକୁ ଉପଭୋଗ କରିବାକୁ ଚାହାନ୍ତି—କିମ୍ବା ସବୁଦିନେ ଯଦି କମ୍ର ସରତର ନମ୍ର ଗୋଧୂଳି ଭିତରେ ନିଜକୁ ହଜାଇ ଦେବାକୁ ଚାହାନ୍ତି, ତେବେ ବୈବାହିକ ଜୀବନର ଇନ୍ଦ୍ରଜାଲ ଭିତରକୁ ପଶନ୍ତୁ ନାହିଁ । ତା' ହେଲେ ପ୍ରେମ ଜଗତର ଖୋଲା ହାଓଆରୁ ଆପଣ ନିଶ୍ଚୟ ବଞ୍ଚିତ ହେବେ । ମଧୁଶଯ୍ୟା ରାତିର ପରେ ସ୍ତରର ବନ୍ଦନୀତ ସେଇ କ୍ଷୁଦ୍ର ମୁଦ୍ରିକାଟି ମଧ୍ୟରେ କେତେ କଥା ଯେ ରହିଛି ତାହା ମିଷ୍ଟର ସି-କବ୍ ମଧ୍ୟ ତାଙ୍କ କବିତାରେ ଆଶ୍ଚର୍ଯ୍ୟ ହୋଇ ପଚାରିଛନ୍ତି—

"Oh, how many torments lie in the small circles of a wedding ring" !! ସେ ମୁଦିଟି ଆପଣ ପିନ୍ଧିଲା-

Digitized by srujanika@gmail.com

ମାହେଇ ଆପଣଙ୍କୁ ଜୀବନଯାକ ନେଙ୍କର କୋପଦୃଷ୍ଟିକୁ ଆସିବାକୁ ଦେବ । ବିବାହ ଆଉ ପ୍ରେମ ଏ ଦୁଇଟି ସତେ ବା ପରସ୍ପର ବିରୋଧୀ ଜିନିଷ ।

ଥରେ ମୋର ଜଣେ ରସିକ ବନ୍ଧୁଙ୍କୁ ତାଙ୍କର କଲେଜ ବେଳା ପ୍ରେମିକାଟି କହିଲେ—"ହାନ ! କଣ କରିବି ମୋତେ ଉପାୟ ବତାଅ ତ ? ଆଜିକୁ କେଇଦିନ ହେଲା ସୁରେଶ ମତେ ବଡ଼ ବିବ୍ରତ କଲଣି । ପଚାରିଲେ କହୁଛି 'ମଇନା ! ମୁଁ ତୁମ ପ୍ରେମ ମାଠିଆରେ କୁମ୍ଭମୁନିଙ୍କ ପରି ବୁଡ଼ି ମରିବାକୁ ବସିଲାଣି—ମୋତେ ରକ୍ଷା କର ।' କିନ୍ତୁ ମୋର ଜମା ଇଚ୍ଛା ନୁହଁ ହାନ ! ପ୍ରେମରେ ପଡ଼ିବାକୁ । ସେଇ ବଜାଖିଆର ପ୍ରେମ ଜାଲରୁ ତେମେ ମତେ ତୁରନ୍ତ ରକ୍ଷାକର—ସେ ଯେମିତି ମୋତେ ଆଉ ଭଲପାଇ ନବସୁ !"

ମୋର ବନ୍ଧୁଟି ହସି ହସି ସଙ୍ଗେ ସଙ୍ଗେ ଉତ୍ତର ଦେଲେ—'ଓଃ, ଓଃ, ଏଇକଥା ଡ଼ଅର ? କିଛି ଚିନ୍ତାନାହିଁ—ତା ପ୍ରେମ ଜାଲକୁ ଛିଣ୍ଡାଇବା ଭାରି ସହଜ କଥା—ତାଙ୍କୁ ବାହା ହୋଇ ପଡ଼ନା ଚଞ୍ଚଳ ।

ପ୍ରକୃତରେ ପ୍ରେମ ଜାଲକୁ ଦାନ୍ତରେ କାଟିକୁଟି ଟିକିନିକି କରି ଛିଣ୍ଡାଇବା ପାଇଁ ବିବାହଟା ଯେପରି ଗୋଟେ ହିରଣ୍ୟକ ନାମ ମୂଷିକରାଜ !! କେମିତି ଶୁଣିବେ ? ଧରନ୍ତୁ ଝରି ଝରି ପଡ଼ୁଛି ସ୍ନିଗ୍ଧ ଜୋହ୍ନାରାତି—ଥରି ଥରି ଉଠୁଚି ରାତିର ବାୟୁମଣ୍ଡଳ, ଦକ୍ଷିଣ ଦିଗରୁ ଧୀରେ ଧୀରେ ବହି ଆସୁଛି ବସନ୍ତର ମଳୟ—କାହିଁ ଦୂର ଝାଉଁବଣରୁ କରୁଣଭାବେ ଚକୋର-ବଧୂ ବିଳପି ଉଠୁଛି । ଆଉ ଆପଣ ଗୋଟିଏ ମଦନାନନ୍ଦ ମୋଦକ ଓ ପେଟେ ରବଡ଼ି ଖାଇ ହାଲୁକା ପୋଷାକରେ କୌଣସି ପାର୍କରେ କିମ୍ବା ଗୋଟିଏ ନଦୀ କୂଳରେ କିମ୍ବା ସେହିଭଳି ଗୋଟିଏ ନିର୍ଜନ ରୋମାଣ୍ଟିକ ସ୍ଥାନରେ ଖୁବ ଲଘୁ ଭାବରେ ବୁଲୁଛନ୍ତି । ଦକ୍ଷିଣା ହାଉଆରେ ଆପଣଙ୍କ ପକେଟର ରୁମାଲ ଭିତରୁ ଇଭିନିଂ ଇନ୍ ପ୍ୟାରିସ୍‌ର ଭୁରୁଭୁରୁ ଆପଣଙ୍କ

Digitized by srujanika@gmail.com

ଫଳରେ ଦେହ ଓ ମନ ଖୁବ୍ ହାଲୁକା ହୋଇଯାଇଛି । ମୋଟ ଉପରେ ଆମେ ଜାଣି ପାରୁନାହାନ୍ତି ଆପଣଙ୍କର ଗୋଡ଼ ଦ'ଟା ଅଛି କି ନାହିଁ !! ଆପଣ ସତେ ବା ଉଡ଼ିବୁଲୁଛନ୍ତି । ଠିକ୍ ଏଇ ଅବସ୍ଥାରେ ବିଜୁଳି ମାରିଲା ପରି, ଆପଣଙ୍କ ଦେହରେ ପ୍ରାପ୍ତ ବାଡ଼େଇ ହୋଇଯାଇଥାନ୍ତେ—ମାତ୍ର ଠିକ୍ ଆପଣଙ୍କ ପାଖରେ ବସି ହୋଇଗଲେ—ଜଣେ ଆଧୁନିକା ତରୁଣୀ—କଳ୍ପଲୋକର ଅପ୍ସରା—ରବୀନ୍ଦ୍ରଙ୍କ ଉର୍ବଶୀ କିମ୍ବା ଉପେନ୍ଦ୍ରଙ୍କର କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ—କିମ୍ବା ମାନସିଂହଙ୍କର ଆଷାଢ଼ ଅଭିସାରିକା ସେଇ ପ୍ରେମମୟୀ ନାୟିକାଟି ? ଆଃ—ଆପଣ ଚଢ଼ଉଇଥାନ୍ତେ—କିନ୍ତୁ ଦେଶର ପ୍ରଧାନମନ୍ତ୍ରୀଙ୍କୁ ରକ୍ଷା କରନ୍ତୁ—ଆପଣ କୌଣସି ଗୋଟେ ବତିଖୁମ୍ବ କିମ୍ବା ଫୁଲଗଛକୁ ଧରି ଅଟକି ଗଲେ । ଆପଣଙ୍କ ଧମନୀରୁ ପ୍ରଚୁର ରକ୍ତ ବାହି ଆପଣଙ୍କ ମୁଣ୍ଡକୁ ଉଠିଗଲା, କିନ୍ତୁ ସେଇଟା ଠିକ୍ ରକ୍ତଚାପ ନୁହେଁ । ଆପଣଙ୍କ ଛାତି ଧଡ଼ ପଡ଼୍—ପାଟି ମେଲା—ଆଖି ଦରବୁଜା—ବାହ୍ୟ ପ୍ରତାରିତ—ଆପଣଙ୍କ ନାକ ତଳେ ଏକ କରୁଣ ଓ ମଧୁର ବାୟୁମଣ୍ଡଳ, ଆପଣ ସତେ ବା ଗୋଟିଏ ମଧୁର ସ୍ୱପ୍ନରେ ବିଭୋର । ତା'ପରେ ସେଇ ଦୈବୀ ଦୁର୍ଘଟଣାରେ ଆପଣ ଆପଣଙ୍କର ଗ୍ୟାଲାଣ୍ଟ୍ରି ବା ଶିଭାଲ୍ରି ଦେଖାଇ ବସିଲେ । ଟିକିଏ ତୋଷାମଦ, ଟିକିଏ ଶିଷ୍ଟାଚାର, ଟିକେ ବ୍ୟଙ୍ଗ, ଟିକେ କବିତ୍ୱ, ଟିକେ ପ୍ରଜ୍ଞା, ଟିକେ ପରିହାସ, ଟିକେ ଧ୍ୱନି, ଟିକେ ବ୍ୟଞ୍ଜନା ଆଉ ସବା ଶେଷରେ ଆପଣ ତାଙ୍କର ଠିକଣାଟା ନୋଟ ବହିରେ ଟିପି ନେଲେ । ବାସ୍ ସେଇ ମୁହୂର୍ତ୍ତରୁ ଆପଣ ଏଇ ହଠାତ୍ ଭାଗ୍ୟବାନ ପରିଚୟଟିରୁ ସୁଯୋଗ ନେବାକୁ ମଥା ଖେଳା-ଇଲେ । ଉପହାର ଚକୋଲେଟ କିଣି କିଣି ଆପଣଙ୍କ ପକେଟ ବଟସ୍ନେ ଟମୁଦ୍ରାର ଓଜନରୁ ରକ୍ଷା ପାଇଲା । ତା'ପରେ ଏହିପରି କେତେଦିନ କଟିଲା । ଆପଣ ଯଦି ଛାତ୍ର ହୋଇଥାନ୍ତି ତେବେ ଫାଇନାଲ୍ ପରୀକ୍ଷା ଡ୍ରପ୍ କରିଦେଲେ । ଯଦି କରଣୀ କିମ୍ବା ଆଉ କଣ ହୋଇଥାନ୍ତି ତେବେ ଆପଣ କଥା ଆପଣ ଜାଣନ୍ତି । ଶେଷରେ ନବମ ଦିବସଟି ଉପସ୍ଥିତ ହେଲା । ସେଇ ଦୀର୍ଘ ପ୍ରତୀକ୍ଷମାଣ ଦିବସଟି—ଏକ ପାର୍କ ମଧ୍ୟରେ କୌଣସି ଏକ ରମଣୀୟ ଗୋଧୂଳିରେ ଆପଣ ତାଙ୍କୁ ମୁହାଁମୁହିଁ ପଚାରିଦେଲେ । ତାଙ୍କର

Digitized by srujanika@gmail.com

ମୁଁଖମଣ୍ଡଳଟି ଶହେଥର ରକ୍ତିମ ହୋଇଉଠିଲା ଏବଂ ଶହେ ଢେଙ୍କୁଣ ଥର ସେ ନାସ୍ତିବାଚକ ଉତ୍ତର ଦେଇସାରିଲା ପରେ ଶେଷରେ କୌଣସିମତେ ସେ ଆପଣଙ୍କର ଚିର ଆକାଙ୍କ୍ଷିତ ସେଇ ଅସ୍ତିବାଚକ ଅବ୍ୟୟ ପଦଟି ଉଚ୍ଚାରଣ କଲେ । ଆଃ ଆଉ ଆପଣଙ୍କୁ ରଖେ କିଏ ? ପାରେ କିଏ ? ଆପଣଙ୍କର ସବୁ ଦୁଃଖ ନୈରାଶ୍ୟ ପାଣି ଫୋଟକା ପରି ମିଳାଇଯାଏ । ଆପଣଙ୍କର ମନେହେଲା ଦୁନିଆରେ ଆପଣ ହିଁ ସର୍ବଶ୍ରେଷ୍ଠ ସୌଭାଗ୍ୟବାନ ବ୍ୟକ୍ତି । ତାପରେ ଆପଣ ଆପଣଙ୍କର ବୋହେମିଆନ ସ୍ପିରିଟ୍ ବା ଆଡ଼୍ଭେନ୍‌ଚର ଦେଖାନ୍ତୁ । ଛାଡ଼ନ୍ତୁ ସମାଜ ବିପ୍ଳବ କରନ୍ତୁ ବାପମାଙ୍କ ବିରୁଦ୍ଧରେ । ଆପଣଙ୍କର ଏଇ ନୂତନ ପ୍ରେମପଥରେ କଣ୍ଟା ହେଉଛନ୍ତି ଯେଉଁ ପ୍ରତିଦ୍ୱନ୍ଦୀ ବନ୍ଧୁବାନ୍ଧବ ଦଳ, ତାଙ୍କ ଗାଲରେ ମାରନ୍ତୁ ଚଟି—ଧାପ ଜଣାନ୍ତୁ କଣ୍ଟକଚଣ୍ଡୀଙ୍କଠାରେ—ଶେଷରେ ବେଦିରେ ବସି ଆପଣ ସେଇ ଦେବୀଙ୍କର ପାଣିଗ୍ରହଣ କରନ୍ତୁ । କିନ୍ତୁ ମହାଶୟ ! ଠିକ୍ ମାସେ—ହଁ ମାସକରୁ ବେଶୀ ନୁହଁ—ଆପଣ ଯେତେବେଳେ ଆପଣଙ୍କର ଜଣେ ଅବିବାହିତ ବନ୍ଧୁଙ୍କୁ ଦେଖିବେ ରାସ୍ତାରେ ସାଇକେଲ ମାରି ସୁସୁରି ବଜାଇ—ଓଣ୍ଠ ହଲାଇ ପାଟିରୁ ଧୂଆଁ ଗୁଡ଼ ଗୁଡ଼ ଫୁଲ୍‌ଫାଙ୍କୁଆ ହୋଇ ପାନଦୋକାନ ଆଡ଼େ ଧାଉଁଛନ୍ତି, ଆପଣ ନିଶ୍ଚୟ ତାଙ୍କର ସାଇକେଲ ହ୍ୟାଣ୍ଡେଲ ଧରି ତାଙ୍କୁ ଅଟକାଇବେ । ଆଉ ଦୀର୍ଘନିଃଶ୍ୱାସ ପକାଇ ଆପଣଙ୍କର କରୁଣ ଇତିହାସ ବଖାଣି ବସିବେ—

"କଅଣ ଆଉ କହିବରେ ଭାଇ ! ଯାହାକିଛି ଜକ୍ ଜକ୍ କରେ, ସବୁ ସୁନା ନୁହେଁ । କିମ୍ବା ଗୃଣକ୍ୟ ବୁଢ଼ାର ସେଇ ପୁରୁଣା ଶ୍ଳୋକ "ବିଶ୍ୱାସ ନୈବ କର୍ତ୍ତବ୍ୟଂ ସ୍ତ୍ରୀଷୁ ରାଜକୁଳେଷୁ ଚ" କିମ୍ବା ତୁଳସୀ ଦାସଙ୍କର ଉକ୍ତି "ଦିନମେଁ ମୋହିନୀ ରାତମେ ବାଘିନ" ନିହାତି ନହେଲେ ପଦେ କଥାରେ ବକ୍ତବ୍ୟ ଶେଷ କରିଦେବେ—"ବାହାହେଲେ ଭାଇ ଜିନ୍ଦେଗୀ ବରବାଦ୍ ।"

ତାପରେ ଆପଣଙ୍କର କାରୁଣିକ ବନ୍ଧୁଟି ହସି ହସି ସିଗାରେଟରେ ନିଆଁ ଲଗାଉ ଲଗାଉ ବଡ଼ ରମଜରେ ଉତ୍ତର ଦେବେ "ଆଃ ବଡ଼ ବିଳମ୍ବରେ କିନ୍ତୁ ବୁଝିଲ ବନ୍ଧୁ । ତମେ କଣ ଜାଣିନଥିଲ—to love is playing the fool once in life, but to marry is playing the fool all one's life long. ଏକୁଟିଆ ରହିବା ମାନେ ଜୀବନରେ ଥରେ ମାତ୍ର ବୋକାମୀ

Digitized by srujanika@gmail.com

କରିବା—କିନ୍ତୁ ବାହାହୋଇ ପଡ଼ିଲି ମାନେ ଜୀବନସାକ ବାରମ୍ବାର ବୋକା ବୋଲି ନିଜକୁ ପ୍ରମାଣ କରି ଗ୍ଭଲିଥିବ ।

"Old Bachelor"ର ଲେଖକ ହାଷ୍ଟବେଲ ପ୍ରେମ ଓ ବିବାହ ସମ୍ବନ୍ଧରେ କହନ୍ତି—ପୂର୍ବକାଳରେ ମନୁଷ୍ୟ ଯାହାକୁ ପ୍ରେମ କରୁଥିଲା ତାକୁ ବିବାହ କରୁଥିଲା—କିନ୍ତୁ ବାଧା—ସେ ଯେପରି ପୁଣି ବଦଳିଗଲେଣି । ହାଷ୍ଟବେଲଙ୍କ ମତରେ ଆଧୁନିକ ଯୁଗରେ କୋର୍ଟସିପ ମ୍ୟାରେଜ୍ ମଧ୍ୟ ଗୋଟିଏ ନିରସ ନାଟକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ମାତ୍ର । କାରଣ ସାଧାରଣତଃ ଲୋକେ ଯାହାକୁ ଭଲ ପାଆନ୍ତି ତାକୁ ବାହା ହୁଅନ୍ତି ନାହିଁ ଏବଂ ଯଦି ବା ଦୈବାତ ଯାହାକୁ ପ୍ରେମ କରନ୍ତି, ତାକୁ ବାହା ହୋଇପଡ଼ନ୍ତି, ତେବେ ବୁଝିବାକୁ ପଡ଼ିବ ଯେ, ସେମାନେ ଅନୁସନ୍ଧାନର ଆରମ୍ଭ କରନ୍ତି ଏବଂ ସେଇ ଅନୁସନ୍ଧାନରେ ଇ ଶେଷ କରନ୍ତି ।

ମହାତ୍ମା ବର୍ଣ୍ଣାଡ଼ଶ' ପୁଣି ବିବାହ ବିଷୟରେ ଯାହାସବୁ କହିଯାଇଛନ୍ତି, ସେ ସବୁ ପଢ଼ିସାରିଲେ କିଏ ଭଲା ବରବେଶ ସାଜିବାକୁ ରସ ରସ ହେବ ? ତାଙ୍କ ମତରେ ବିବାହ ହେଉଛି—"is a ghastly Public Confession of a strictly private intention"ଅର୍ଥାତ୍ ବିବାହଟା ହେଉଛି ପୂର୍ଣ୍ଣମାତ୍ରାରେ ଗୋଟିଏ ବ୍ୟକ୍ତିଗତ ଇଚ୍ଛାର ଏକ ଭୟଙ୍କର ସାମାଜିକ ସ୍ୱୀକୃତି । ବର୍ଣ୍ଣାଡ଼୍ ଶ ଆହୁରି ବି କହନ୍ତି ବିବାହ ହେଉଛି, is a contract whereby woman sells herself to a man for the social status of a wife and a right to be pensioned in old age—ଅର୍ଥାତ୍ ବିବାହଟା ହେଉଛି ଗୋଟାଏ ଚୁକ୍ତିପତ୍ର, ଯେଉଁଥିରେ କି ନାରୀ ସାମାଜିକ ସ୍ତ୍ରୀ ମର୍ଯ୍ୟାଦା ପାଇବା ପାଇଁ ଏକ ପୁରୁଷ ପାଖେ ନିଜକୁ ବିକ୍ରୟ କରେ । କାରଣ ବାର୍ଦ୍ଧକ୍ୟରେ ଏହାଦ୍ୱାରା ସେ ତା'ଠାରୁ ଗୋଟିଏ ପେନ୍‌ସନ ବି ଦାବୀ କରିପାରିବ ।

Mr. Heine (ହାଇନ୍) ବି ବିବାହ ଜୀବନକୁ ପ୍ରଶଂସା ସୂଚକ ଆଖିରେ ଦେଖି ନାହାନ୍ତି । ତାଙ୍କ ମତରେ—ବିବାହ ହେଉଛି ଗୋଟିଏ ଅସୀମ ସାଗର, ଯାହାପାଇଁକି ଆଜି ପର୍ଯ୍ୟନ୍ତ କୌଣସି ପ୍ରକାର କମ୍ପାସ ବା ଦିଗ୍‌ନିର୍ଣ୍ଣୟ ଯନ୍ତ୍ରର ଆବିଷ୍କାର ହୋଇନାହିଁ । Balzac ବି ସେଇ ଏକା କଥା

Digitized by srujanika@gmail.com

କହନ୍ତି । "No navigator has yet traced lines of latitude and longitude on the Conjual Sea." ଅର୍ଥାତ୍ ଦାମ୍ପତ୍ୟ ସାଗରରେ କୌଣସି ନାବିକ ଆଜିପର୍ଯ୍ୟନ୍ତ ଅକ୍ଷାଂଶ କ ଦ୍ରାଘିମା ପାଇ ପାରିନାହାନ୍ତି ।

ପ୍ଲୁଟାର୍ଚ୍ଚ (Plutarch) ଗୋଟିଏ ରୋମାନ ଭଦ୍ରବ୍ୟକ୍ତିଙ୍କ ବିଷୟରେ ମଜା କଥାଟିଏ କହନ୍ତି । ସେ ଭଦ୍ରବ୍ୟକ୍ତି ତାଙ୍କୁ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେବାପରେ— ତାଙ୍କର ଜଣେ ବନ୍ଧୁ ତାଙ୍କୁ ପଚାରିଲେ—'କାହିଁକି ଆପଣ ତାଙ୍କୁ ଛାଡ଼ପତ୍ର ଦେଲେ ଆଜ୍ଞା ? ସେ କ'ଣ ସୁନ୍ଦରୀ ନୁହନ୍ତି ? ସେ କଣ ସତୀ ନଥିଲେ ? ରୋମାନ୍ ଭଦ୍ରବ୍ୟକ୍ତିଟି ନିଜ ଗୋଡ଼ରୁ ଜୋତାକାଢ଼ି ତାଙ୍କ ବନ୍ଧୁଙ୍କୁ ଦେଖାଇ କହିଲେ— "ଏ ଜୋତାଟି କଣ ସୁନ୍ଦର ନୁହେଁ ? ଏ ଜୋତା କି କଣ ମଜଭୁତ ଦେଖାଯାଉ-ନାହିଁ ? କିନ୍ତୁ ବନ୍ଧୁ, ଆପଣମାନଙ୍କ ମଧ୍ୟରୁ କେହି କହିପାରିବେନି ଯେ ଜୋତାର କେଉଁ ଅଂଶ ମୋ ଗୋଡ଼ରେ ଫୋଡ଼ି ହୋଇଯାଉଛି ? ?

ସକ୍ରେଟିସ୍ଙ୍କ ପରି ମହାମାନବଙ୍କୁ ବି ଯେତେବେଳେ ତାଙ୍କର ଜଣେ ଶିଷ୍ୟ ପ୍ରଶ୍ନ କଲେ—"ଆଜ୍ଞା, ବାହା ହେବି କି ନାହିଁ"—ସକ୍ରେଟିସ୍ ତାଙ୍କୁ ଉତ୍ତର ଦେଲେ—"ତମେ ଯାହା କର ବତ୍ସ—ଶେଷରେ ଅନୁତାପ କରି ନିଷ୍ପତ୍ତି କରିବ ।"

ଜଣେ ନୂତନ ବିବାହିତ ବନ୍ଧୁଙ୍କ ସହ ଦେଖାହୁଅନ୍ତେ—ତାଙ୍କୁ ପଚାରିଲି—"କେମିତି କଟୁଛି ଆଜ୍ଞା ? ଶ୍ରୀମତୀଙ୍କ ସହିତ ବେଶ୍ ବନୁଚିତ ? ହଁ, ଆପଣଙ୍କର ତ ଲଭ୍ ମ୍ୟାରେଜ ???" ମାତ୍ର ନାସିକା କୁଞ୍ଚନ କରି ବନ୍ଧୁ ଜଣକ କହିଲେ—"ଆଉ ପଚାରନ୍ତୁନି ଆଜ୍ଞା—ଲଭ ମ୍ୟାରେଜ୍ ??? ହୁଁ, ହୁଁ, ବିବାହ ପୂର୍ବରୁ ପ୍ରେମ କଲାବେଳେ ମୁଁ ଗପୁଥିଲି ସେ ଶୁଣୁଥିଲେ । ବିବାହ ପରେ ସେ ଗପିଲେ ଆଉ ମୁଁ ଶୁଣିଲି । ଆଉ ବର୍ତ୍ତମାନ ଆମେ ଉଭୟେ ଏତେ ଗପୁଛୁ ଯେ ଆମ ପଡ଼ୋଶୀ ଗୁଡ଼ାକ ସେ ସବୁ କଥା ମୂଳରୁ ଶେଷଯାଏ ଶୁଣୁଛନ୍ତି ।"

ବାସ୍ ଏହାହିଁ ହେଲା ଆପଣଙ୍କର ପ୍ରେମ ବିବାହ—ବା ମଧୁ ବିବାହ ବା ଯେଉଁ ବିବାହ ତମେ କୁହ ।

Digitized by srujanika@gmail.com

ଆଜି ଥରେ ଜଣେ ପ୍ରଫେସରଙ୍କ ସ୍ତ୍ରୀ ଯେତେବେଳେ ଜଣେ ଛାତ୍ରଙ୍କ ସଙ୍ଗେ ଘରୁ ବାହାରିଗଲେ, ପ୍ରଫେସରଟି ସୁସ୍ଥ ମନରେ ସକାଳୁ ହାଇମାରି ଓ ଅଳସଭାଙ୍ଗି କହିଲେ - 'ଭଗବାନ ରକ୍ଷାକଲେ—ମୁଁ ବର୍ଷେ ହେଲାଣି ସେ ଟୋକାକୁ ବାରମ୍ବାର ଏଇକଥା କରିବା ପାଇଁ କହି କହି ନିର୍ବାଣ ହୋଇ-ଯାଇଥିଲି ।'

ଏ ସବୁ ତ ଶୁଣିଲେ ? ମାତ୍ର ଘରଣୀଗୁଡ଼ାଙ୍କର ଉପର ରୂପ ନ ଦେଖି ଯଦି ସେମାନଙ୍କର ସ୍ୱରୂପ ଦେଖନ୍ତେ—ତେବେ ଗୋବଧ ନିବାରଣୀ ବିଲ୍ ଅପେକ୍ଷା ହିନ୍ଦୁ କୋଡ୍ ବିଲ୍‌ଟାକୁଇ ଆପଣ ବେଶୀ ଜରୁରୀ ବୋଲି ମନେ-କରନ୍ତେ । ସେମାନଙ୍କର ସବୁ ଦୁର୍ଗୁଣ ମଧ୍ୟରେ ଗପୁଡ଼ି ସ୍ୱଭାବଟାଇ ବେଶୀ ଆମ ମୁଣ୍ଡ ବିଗାଡ଼ି ଦିଏ । ଧରିନିଅ ଘରଣୀ ଏକାଠି ହେବେ ତ ପାଟି ଆଜି ହସରେ ଆପଣଙ୍କ ଘର ପକାଇବେ ଉଠାଇବେ । ଘରେ ବି ଯଦି ଗ୍ରାମୋଫୋନ କମ୍ପାନୀ ରେକର୍ଡଟିଏ ରଖିଲେ, ତା' ହେଲେ ତିନିଟା ଦିନ ବି ସେ ତିଷ୍ଠି ପାରିବେ ନାହିଁ, ଆପଣଙ୍କ ସ୍ତ୍ରୀଙ୍କ ପାଟିରେ । କେହି ଯଦି ଗପ କରିବାକୁ ନ ମିଳିଲେ, ତେବେ ବିଚରା ସ୍ୱାମୀ ଦେବତାଟି ମଲେ । ଚିଙ୍ଗିଶାଳଠାରୁ ଢେଙ୍କାନାଳ ଯାଏ ଯେତେ ଗଳ୍ପ—ଯେତେ ଗୁଜବ—ଯେତେ ଆଖ୍ୟାୟିକା—ଯେତେ କଥା—ଯେତେ ଉପାଖ୍ୟାନ—ଛି—ଛି—ଆତ୍ମହତ୍ୟା ପାଇଁ ସରକାରୀ ନିୟମ ଥିଲେ ମୁଁ କେବେଠାରୁ ଆତ୍ମହତ୍ୟା କରିସାରନ୍ତିଣି ।

ରାତିଯାକ ନାନା ଚିନ୍ତାରେ ନିଦ ନ ହୋଇ ପାହାନ୍ତି ପହରକୁ ଆଖି ପତାରେ ନିଦର ପାତଳା ସର ଲାଗିଆସୁଥିବ ! ଗୋଟେ ଗଧ ଯଦି ଆପଣଙ୍କ ଝରକା ପାଖରେ ଉଚ୍ଚସ୍ୱରରେ—ତେବେ ଆପଣଙ୍କ ମନ କଣ ନ ହେବ ? କିନ୍ତୁ ମୁଁ ଆଜ୍ଞା ସେ ଗଧ ବୋବାଳି ପଛେ ସହିବି, ମାତ୍ର ସକାଳୁ ମୋ ସ୍ତ୍ରୀଙ୍କର ସାରେଗାମା ପାଧାନି ବହିର୍ଭୂତ ସେଇ କିଂଭୂତ କିମାକାର ବିକଟ ଚିତ୍କାର ସହି ପାରିବି ନାହିଁ । ଜଣେ ବଡ଼ ଲେଖକ ତାଙ୍କର ଖଣ୍ଡେ ପ୍ରସିଦ୍ଧ ବହି ତାଙ୍କ ସ୍ତ୍ରୀଙ୍କ ନାମରେ ଉତ୍ସର୍ଗ କରି ଲେଖିଛନ୍ତି—'ମୋ ସ୍ତ୍ରୀଙ୍କୁ—ଯାହାଙ୍କର ଦୀର୍ଘ ଅନୁପସ୍ଥିତି ଯୋଗୁହିଁ—ଏ ବହିଟି ଲେଖିବାରେ ମୁଁ ସମର୍ଥ ହେଲି ।'

କିନ୍ତୁ ଏଇ ଦୁର୍ଗୁଣଟିର ମୂଳ କାରଣ ହେଉଛି—ଆମେ ସବୁ ନୀରବରେ ଭାବୁ, କିନ୍ତୁ ଆମ ଘରଣୀମାନେ ଖୁବ୍ ଉଚ୍ଚସ୍ୱରରେ ଭାବନ୍ତି । ଯେ କୌଣସି

Digitized by srujanika@gmail.com

ଗ୍ଳେଟିଆ ଗବନାଟିଏ ତାଙ୍କ ମୁଣ୍ଡକୁ ଡୁକଲ୍ ତ ସଙ୍ଗେ ସଙ୍ଗେ ସେଇଟା ତାଙ୍କ ଭୁଣ୍ଡବାଟେ ଅତି କଦର୍ଯ୍ୟ ଭାବେ ବାହାରି ପଡ଼ିବ । ଆମେ ଗୃହସ୍ଥ, ସ୍ତ୍ରୀ ଆମକୁ ସ୍ନେହ କରନ୍ତୁ । ମାତ୍ର ସେ ଗୃହାନ୍ତ ଆମେ ତାଙ୍କ ସଙ୍ଗେ ଗପ କରୁ । ପୁରୁଷ ନୀରବରେ ଭଲପାଏ—ମାତ୍ର ନାରୀ ତାର ଭଲପାଇବା ଦେଖାଇବା ପାଇଁ ଯେଉଁ ସବୁ କାଣ୍ଡ କାରଖାନା କରିବସେ, ସେକଥା ଆପଣ ବାହା ନ ହେଲେ ଜାଣିବେ କେଣିତ ? କାମ ଅପେକ୍ଷା, କେବଳ କଥାଟାକୁଇ ନାରୀ ବେଶୀ ବିଶ୍ୱାସ କରେ । ସେଥିପାଇଁ ଅବହମାନ କାଳରୁ ପୁରୁଷ କାବ୍ୟକବିତାରେ ନାରୀର ପ୍ରଶସ୍ତି ଗାଇଆସୁଛି—ନାରୀ କାହିଁରେ ବି ସନ୍ତୁଷ୍ଟ ହେଉନାହିଁ ।

କୌଣସି ଗୋଟେ ବିଷୟରେ ସମ୍ୟକ ଭାବେ ଚିନ୍ତା କରିବା, ସେପରି ମହିଳାଙ୍କର ଜାତକରେ ନାହିଁ । ସେମାନେ ଅନୁଭବ କରିବାରେ ଯେତିକି ପଟୁ, ଚିନ୍ତା କରିବାରେ ତା'ଠାରୁ ବେଶୀ ଗଧ । ଦୁର୍ଭାଗ୍ୟବଶତଃ ଦୁନିଆରେ ଅନେକ ସ୍ୱାମୀ ଅଛନ୍ତି, ଯେଉଁମାନେ କି ସାହିତ୍ୟ, ରାଜନୀତିକ, ପ୍ରତ୍ନତତ୍ତ୍ୱ ବା ବିଜ୍ଞାନ ଆଦିରେ ମଥା ଖଟାଇ ଦିନରାତି ସେଇ ସବୁ ବିଷୟରେ ଚିନ୍ତା କରିବାକୁ ଭଲପାନ୍ତି । ଏଭଳି ସ୍ୱାମୀଙ୍କ ସଙ୍ଗେ ତାଙ୍କ ଗପୁଡ଼ି ସ୍ତ୍ରୀଟିର ଜାତକରେ ଯେତେ ରାଜଯୋଟକ ପଡ଼ୁପଛେ—ପ୍ରକୃତ ଜୀବନରେ କିନ୍ତୁ ସେମାନଙ୍କୁ "ନାଗନାଡ଼ୀ"ର ଦୁର୍ଯୋଗ ପ୍ରତିଦିନ ଭୋଗିବାକୁ ପଡ଼େ ।

ଆମ ଭଳି ସାଧାରଣ ସ୍ୱାମୀମାନଙ୍କର ଅବସ୍ଥା ବି କଣ କମ୍ ଅସହାୟ ? ସକାଳୁ ଆପଣ ଏଇ ଉଠିଲେ—ମୁହଁଟା ଧୋଇନେଇ ସର୍ବତ ବା ଚା ଖାଇ ଆରାମଚଉକି ଉପରେ ସଦ୍ୟ ଖବର କାଗଜଟାକୁ ଧରି ବସିପଡ଼ିଲେ । ମାତ୍ର ଆପଣଙ୍କର ଦୁର୍ଭାଗ୍ୟ—ଆପଣଙ୍କର ଘରଣୀ ରୋଷେଇଘରେ ଚା ପିଆଲା ବା କାଚଗ୍ଲାସ ଗୁଡାକ ଝଣ ଝଣ କରି ହାତରୁ ଖସାଇ ଭାଙ୍ଗି ଦେଇ ଓଲଟି ଆସି ଆପଣଙ୍କ ସଙ୍ଗେ କଜିଆ ଗପ ଆରମ୍ଭ କରିଦେବେ । ଆଉ ଆପଣ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ି "ମିତ୍ରଲାଭ"ର ସେଇ "ଲଘୁପତନକ ନାମା" ବାୟସର ଭାଷାରେ କହିବେ—"ଅଦ୍ୟ ପ୍ରାତରେ ବାନିଷ୍ଟ ଶ୍ରବଣଂ ଜାତଂ ନ ଜାନେ କି ମନଭିମତଂ ଶ୍ରବଣ୍ୟିସ୍ୟାମି ଅଫିସେ—ଦପ୍ତରେ ବା !"

ଆପଣ ଆଶ୍ଚର୍ଯ୍ୟ ହେବେ, ଗଲା ମହାଯୁଦ୍ଧବେଳେ ପ୍ରବଳ ପରାକ୍ରମଶାଳୀ ହିଟଲରସୁର ଯେତେବେଳେ ଗୋଟି ଗୋଟି ଦେଶ ଜୟ କରିବସିଲା ସେତେ-

Digitized by srujanika@gmail.com

ବେଳେ ଇଂଲଣ୍ଡର ଲୋକେ ବିଶ୍ୱହିଟଲରର ଆକ୍ରମଣ ଭୟରେ ସର୍ବଦା ଥରି-ଉଠୁଥିଲେ । ମାତ୍ର ସେତେବେଳେ ଇଂଲଣ୍ଡର ଜଣେ ଅଶାନ୍ତ ଗୃହସ୍ଥ ତାର ଗପୁଡ଼ି ସ୍ତ୍ରୀକୁ କହିଲି ଆଶ୍ୱାସନା ଦେଇ—କିଛି ଭୟ କରନାହିଁ ଡାର୍ଲିଂ ! ତମପରି ଯଦି ଆଉ ତିନୋଟି ଗପୁଡ଼ି ନାରୀ ଇଂଲଣ୍ଡରେ ଥିବେ, ତେବେ ହିଟଲରର ବାପା ବି ଇଂଲଣ୍ଡ ଆସିବାକୁ ଇଚ୍ଛା କରିବ ନାହିଁ, ଆଉ ମୋର ବିଶ୍ୱାସ ଇଂଲଣ୍ଡରେ ତୁମଭଳି ଗପୁଡ଼ି ନାରୀ ପଚାଶ ହଜାରରୁ ବେଶୀ ଅଛନ୍ତି ।

ଶେଷରେ ନିମ୍ନଲିଖିତ କଥୋପକଥନରୁ ଆପଣ ଜାଣିପାରିବେ ଯେ ବିବାହ ଦୁଇଟି ବିପରୀତ ଜୀବନକୁ ଏକ ପଥରେ ନେବାପାଇଁ ଆଦୌ ସମର୍ଥ ନୁହଁଇ ।

ଶ୍ରୀମତୀ—ତାହେଲେ ତୁମେ ମୋତେ କାହିଁକି ବିବାହ କଲ ?

ଶ୍ରୀଯୁକ୍ତ—ମୋ ସମ୍ପତ୍ତିର ଜଣେ ଉତ୍ତରାଧିକାରୀ ପାଇଁ ।

ଶ୍ରୀମତୀ—ସେଥିରେ ଭଲି ସଫଳ ହେଲ ?

ଶ୍ରୀଯୁକ୍ତ—ନା—କିନ୍ତୁ ତୁମେ ମୋତେ କଅଁ ବାହା ହୋଇଥିଲ ?

ଶ୍ରୀମତୀ ସମାଜରେ ପୁରୁଷର ସବଳତା ଦ୍ୱାରା, ନାରୀର ଦୁର୍ବଳତାକୁ ରକ୍ଷା କରିବ ବୋଲି ।

ଶ୍ରୀଯୁକ୍ତ—ତୁମର ଆଶା ପୂରଣ ହେଲି କି ?

ଶ୍ରୀମତୀ—ନା, ମୋଟେ ନୁହଁ ।

ମଧ୍ୟସ୍ଥ—କିନ୍ତୁ ତୁମ ଦୁହିଁଙ୍କ ମଧ୍ୟରେ ସୁଖ ଶାନ୍ତି ପାଇଁ ପ୍ରଧାନ ପ୍ରତି-ବନ୍ଧକ କ'ଣ ?

ଶ୍ରୀଯୁକ୍ତ—ପ୍ରଥମେ ମୁଁ ତାଙ୍କ ସଙ୍ଗେ ସକାଳେ ଥଣ୍ଡା ସର୍ବତ କାଗଜୀ ରସ ଦେଇ ପିଇ ପାରିବ ନାହିଁ ।

ଶ୍ରୀମତୀ—ମୁଁ ତୁମ ସଙ୍ଗେ ବଡ଼ଭୋରୁ ଉଠି କାକରଲଗା ଘାସ ଉପରେ ବୁଲି ପାରିବନି ।

Digitized by srujanika@gmail.com

ଶ୍ରୀଯୁକ୍ତ—ମୁଁ ବି ତୁମ ସଙ୍ଗେ ସନ୍ଧ୍ୟାରେ କ୍ଲବରେ ଯାଇ ପିଙ୍ଗ୍ ପିଙ୍ଗ୍ ଖେଳିପାରିବି ନାହିଁ ।

ଶ୍ରୀମତୀ—ମୁଁ ସବୁବେଳେ ଗୁଡ଼ାଏ ବହି ପଢ଼ିବାକୁ ଘୃଣା କରେ ।

ଶ୍ରୀଯୁକ୍ତ—ତୁମ ସିଲେଇଯନ୍ତ୍ର ଦେଖିଲେ ମୋର ନାହିଁ ରୁଚି ।

ଶ୍ରୀମତୀ—ଦିନସାରା ତୁମର କର୍କଶ ସ୍ୱରବତାହା ମୋ ପକ୍ଷରେ ଅସହ୍ୟ ।

ଶ୍ରୀଯୁକ୍ତ—କିନ୍ତୁ ଦିନସାରା ତୁମର ବକ୍ ବକ୍ ଶୁଣିଲେ ମୋର ମୁଣ୍ଡ ପିଟି ଦେବାକୁ ଇଚ୍ଛା ହୁଏ ।

ଶ୍ରୀମତୀ—ତା'ହେଲେ ଦୁନିଆରେ ଏପରି କିଛି ଜିନିଷ ଅଛି—ଯେଉଁଥିରେ ଆମେ ଦୁହେଁ ଏକମତ ହୋଇପାରିବା ?

ଶ୍ରୀଯୁକ୍ତ—ହଁ—ହଁ ଅଛି । ଏଇମାତ୍ର ଗୋଟିଏ । ଯଦି ଆମେ ପରସ୍ପରକୁ ଛାଡ଼ପତ୍ର ଦେଉଁ ।

ଶ୍ରୀମତୀ—ତୁମର ଏ ପ୍ରସ୍ତାବକୁ ମୁଁ ଏଇ କାଳରେ ଓ ଏକ ସ୍ଥାନରେ ଆନ୍ତରିକ ସମର୍ଥନ ଜଣାଉଛି ।

ଶ୍ରୀଯୁକ୍ତ—ଧନ୍ୟବାଦ ।

ଶ୍ରୀମତୀ—ଧନ୍ୟବାଦ ।

## ଉପସଂହାର

ଅତଏବ ଏତେ କଥାରୁ ଏହି ଉପଦେଶ ମିଳୁଛି ଯେ ଯଦି ଆପଣ କୌଣସି ଝିଅକୁ ପ୍ରେମ କରୁଥାନ୍ତି, ତେବେ ଆପଣଙ୍କୁ ମୋର ଶତ ଅନୁରୋଧ—ମୋ ରାଣ ରହିଲା, ଆପଣ ତାକୁ ବାହା ହୁଅନ୍ତୁ ନାହିଁ । ସାଧୁ ସାବଧାନ—ପ୍ରେମଜାଲ ଅପେକ୍ଷା ବିବାହ ଜାଲ୍ ଆହୁରି ମାରାତ୍ମକ ।



Digitized by srujanika@gmail.com

# ନାମ ଲାଗି ନାକେଦମ୍

କେବେ ମନେ ପଡ଼ୁନାହିଁ—ତେବେ ବହୁଦିନ ତଳେ ବିଶିଷ୍ଟ ଗାଳ୍ପିକ ବନ୍ଧୁ ଅଖିଳ ପଟ୍ଟନାୟକ ଦିନେ ଖୁବ୍ ଗୁରୁଗମ୍ଭୀର କଣ୍ଠରେ ମୋତେ ପଚାରି-ଦେଲେ "ମହାପାଣେ ! ତୁମେ ଏଇ 'ନାକ' ଅବୟବଟା ଉପରେ କେବେ ଦୃଷ୍ଟି ଦେଇଛ ? କି ଅବାନ୍ତର ଆଉ ଅସୁନ୍ଦରଭାବେ ଗୋଟାଏ ଅସହ୍ୟ ଅହଙ୍କାରର ରୂପକହୋଇ ମଣିଷର ମୁହଁ ଉପରେ ସେଇଟା ଠିଆ ନହୋଇଛି !!"

ମଣିଷର କୌଣସି ଅଙ୍ଗପ୍ରତ୍ୟଙ୍ଗ ଉପରେ ତଦ୍‌ବଧି ମୁଁ ଆଦୌ ସଚେତନ ନଥିଲି । ମାତ୍ର ସେଇଦିନୁ ସର୍ବଦା ମୁଁ ଯାହାକୁ ଦେଖିଲି—ମୋର ଆଗ ଦୃଷ୍ଟି ପଡ଼ୁଥିଲା ତାର ନାକ ଉପରେ । କ୍ରମେ ମତେ ହସ ବି ମାଡ଼ିଲା । ସତକୁ ସତ ଗୋଟାଏ ଅବାନ୍ତର ଅସହ୍ୟ ଅସୁନ୍ଦର ଅହଂକାର ଏହି ନାକଟା । ଆଉ କିଛି କାଳାବଧି ଖାସ୍ ଏଇ ନାକଟା ଲାଗି ହିଁ ସବୁ ମଣିଷ ମତେ ବଡ଼ ହାସ୍ୟାସ୍ପଦ ଓ ହାସ୍ୟକର ଜଣାଗଲେ । ସତେକି ସବୁ ନାରୀ ଓ ପୁରୁଷ ଗୋଟାଏ କୃତ୍ରିମ ମାଂସପିଣ୍ଡ ମୁହଁର ମଝିରେ ଲଗାଇ ବୁଲୁଛନ୍ତି । ସୁନ୍ଦରୀ ନାରୀଟିଏ ଦେଖିବା ମାତ୍ରେ ଆଗେ ତାର ନାକ ଉପରକୁ ମୋର ଦୃଷ୍ଟି ଚାଲି-ଯାଉଥିଲା, ଆଉ ସଙ୍ଗେ ସଙ୍ଗେ ମୋର ମନେହେଉଥିଲା---ରୂପସୀର ମୁଖ-ଚନ୍ଦ୍ରରେ ଏଇ ନାକଟା ଗୋଟାଏ ଅନାବଶ୍ୟକ, ଅସୁନ୍ଦର, ଅବାନ୍ତର, ରୁକ୍ଷ ଆଗ୍ନେୟଗିରିର ଶୃଙ୍ଗ । ବିଧାତାର କ'ଣ ଦରକାର ଥିଲା ଏଇ ମୁହଁ ମଝିରେ ଗୋଟାଏ ଅଯଥା ମାଂସର ବନ୍ଧ ପକାଇବାରେ ? ମୁଁ ବଡ଼ ଅସହିଷ୍ଣୁ ହୋଇ-ଉଠୁଥିଲି । ଆଉ ମଧ୍ୟ ଭାବୁଥିଲି—ଏଇ "ନାକ"କୁ କେନ୍ଦ୍ରକରି କେଉଁ ଚିନ୍ତାଶୀଳ ବ୍ୟକ୍ତି ମଣିଷର ଗୋଟିଏ ବ୍ୟଙ୍ଗଚିତ୍ର ( କାର୍ଟୁନ୍ ) ଗଣେଶଙ୍କ ମୂର୍ତ୍ତିରେ ପ୍ରକାଶ କରି ଦେଇଛି ।

କିନ୍ତୁ ନାକପ୍ରତି ଏହି ଅସହିଷ୍ଣୁତା ମୋର କିଛିକାଳପରେ କଟିଗଲା ! କେମିତି ଜାଣନ୍ତି ? ମୋର ଅଦୃଷ୍ଟ ବଶରୁ ହେଉ ବା ଯଥୋଚିତ ସାବଧାନ ନିରୀକ୍ଷଣତାର ଅଭାବ ହେତୁ ହେଉ, ମୋର ଗୃହିଣୀ ମୋତେ ପ୍ରତିଦିନ "ନାକ"

Digitized by srujanika@gmail.com

ଉପରେ ବଡ଼ ସଚେତନ କରି ଦେଇଅଛନ୍ତି । ଉଦ୍ଭମସ୍ୱଳା ସବୁ ଦୃଷ୍ଟିରୁ ଶ୍ରୀଯୁକ୍ତା; ମାତ୍ର କେଉଁ ରାମ ଲକ୍ଷ୍ମଣଙ୍କର ସ୍ଥାନ ଅସ୍ୱାଘାତରେ ତାଙ୍କ "ନାକ" ଶିରାଟି ଏପରି "ଦାନ" ହୋଇଗଲା ଏବଂ ତାହା ଫଳରେ ଶ୍ରୀମୁଖଟି ଦିଶିଲା ପଟେ "ସୁନାଥାଳ" ପରି କମ୍ବା "ଠିକ୍ ୦ ବର୍ତ୍ତୁଳ ଚନ୍ଦ୍ର"ଟିଏ ଭଳି, ସେ କଥା ମୁଁ କପରି ଜାଣିଥାନ୍ତି ? ବିଶେଷତଃ ବିବାହ ପୂର୍ବରୁ ମୋର ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲା--ନାରୀର ଆଖି ଦୁଇଟି । ଏହି ନାକ--ବିଭବରେ ଦରିଦ୍ରା ହୋଇଥିବାରୁ ମୋର ଶ୍ରୀମତୀ ବହୁ ଦିନ ଓ ରାତି ନାକରେ କାନ୍ଦିଛନ୍ତି ଓ ମାନଭଞ୍ଜନ କରି କରି ମୁଁ ମଧ୍ୟ ନାକେଦମ୍ ହୋଇଛି । ଛାଡ଼ନ୍ତୁ, ସେ ସବୁ ଘରକଥା ମୋର ବାଗ୍ଲତା ଗୁଣରୁ ପଦାରେ ପଡ଼ିଯାଉଛି । କିନ୍ତୁ କହିବା ମଧ୍ୟ ଉଚିତ୍ ନୁହେଁ ଯେ ମୋର ଦୁଇଟିଯାକ କନ୍ୟା ମଧ୍ୟ ତାଙ୍କ ମାଆଙ୍କର ଏହି ନାକ—ଦାରିଦ୍ର୍ୟର ଅଂଶିଦାରଣୀ ହେଲେ । ସେଥିଲାଗି ମତେ ଏବେ ନାକରେ କାନ୍ଦିବାକୁ ପଡ଼ୁଛି ।

ପ୍ରକୃତ କଥା ଏବେ ତରେରେ ବୁଝିଲି--ମନୁଷ୍ୟର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଭିତରେ ଏହି "ଘ୍ରାଣେନ୍ଦ୍ରିୟ"ଟିର ସ୍ଥାନ କେତେ ଉଚ୍ଚତର । ବିଶିଷ୍ଟ ସୌନ୍ଦର୍ଯ୍ୟ ଦାର୍ଶନିକ ଆଲେକ୍‌ଜାଣ୍ଡାର ଡୁମାସ୍ କହନ୍ତି--"ନାକର ବୈଶିଷ୍ଟ୍ୟ—ଅତୁଳନୀୟ, ମନୁଷ୍ୟର ମୁଖମଣ୍ଡଳରେ ଏକ ଉଚ୍ଚତମ ହେବାରୁ ବୃକ୍ଷଭଳି ଅଧର ଉପରେ ଶ୍ମଶ୍ରୁରାଜିର ଉଦ୍ଭିଦଗୁଡ଼ିକୁ ପଦାନତ କରି ଏକ ସୁନ୍ଦର ଅହଂକାର ସଦୃଶ ଦଣ୍ଡାୟମାନ ଏହି ନାସିକା । ଦୁଇଟି ଧନୁ ରୂପକ ଆନଂଶତ ଭ୍ରୂରୁ ଦୁଇଟିକୁ ସମାନ ଭାବେ ଧରି ରଖିଛି ଏହି ନାକ । ଯେମିତି ଗୋଟିଏ ବିରାଟ ସ୍ତମ୍ଭ; ଆଉ ତାର ଚୂଡ଼ା ଦେଶରେ ଚମତ୍କାର ଇଗଲ ଉଡ଼ି ଉଡ଼ି ଆସି ବସି ବିଶ୍ରାମ ନିଏ । ଆଉ ମୁକ୍ତ ଦନ୍ତପନ୍ତିର ଶୁଭ୍ରହାସ୍ୟ ଶ୍ୱେତବର୍ଣ୍ଣର ପୁଷ୍ପମାଳଟିଏ ଭଳି ତା' ଦେହରେ ଶୋଭାପାଏ ।"

ଡୁମାସ୍ ପୁଣି କହନ୍ତି, "ଆମର ସବୁ ଇନ୍ଦ୍ରିୟମାନଙ୍କ ମଧ୍ୟରେ "ନାକ"ର ବିଶ୍ୱସ୍ତ କର୍ତ୍ତବ୍ୟନିଷ୍ଠା ଆଉ କାହାର ନାହିଁ । ଆଖି ମାନେ ଆରାମରେ ଢୁଲେଇ ଯା'ନ୍ତି । ପାଟି ନିସ୍ତବ୍ଧ ଭାବେ ଶୋଇପଡ଼ନ୍ତି । କାନମାନେ କିଛି ଶୁଣନ୍ତି ନାହିଁ । ମାତ୍ର ନାକ ? ବିଚରା ସବୁବେଳେ କର୍ତ୍ତବ୍ୟରତ । ଫୁସ୍ ଫୁସ୍ ଆଉ ହୃତ୍‌ପିଣ୍ଡ କେବଳ ଏହି ନାକ ଉପରେ-ଇ ନିର୍ଭର କରି ଚାଲିଥାନ୍ତି ।"

Digitized by srujanika@gmail.com

ମନୁଷ୍ୟର ସମସ୍ତ ଚରିତ୍ର ଓ ବ୍ୟକ୍ତିତ୍ୱର ସ୍ପଷ୍ଟ ଓ ସ୍ଥୂଳବାସ୍ତବ ସାକ୍ଷୀ ଏହି ନାକ । ଆଉ ସେଥିଲାଗି ହିଁ ଆମର ସର୍ବଶ୍ରେଷ୍ଠ ଅଙ୍ଗ ମୁଖମଣ୍ଡଳରେ ତାର ଏତେବଡ଼ ସମୁନ୍ନତ ଅବସ୍ଥିତି । ନାକଦ୍ୱାରା ବହୁକାର୍ଯ୍ୟ ସାଧିତ ହୁଏ । ଆମେ ସମସ୍ତେ ନାକରେ ହିଁ ନିଃଶ୍ୱାସ ପ୍ରଶ୍ୱାସ ନେଉ ଓ ଛାଡ଼ୁଁ । ନାନାବିଧ ଗନ୍ଧ ମଧ୍ୟ ଆଘ୍ରାଣ କରୁ । କିନ୍ତୁ ସଚୀନ୍ ଦେବବର୍ମନ୍ ନାକ ସାହାଯ୍ୟରେ ଗୀତ ଗାଆନ୍ତି । ମୋ ସାନ ଭଉଣୀ ନାକରେ କାନ୍ଦେ । ଅନେକ ପ୍ରେମିକା ସେମାନଂକର ପ୍ରେମିକ ମାନଂକର ନାକକୁ ନ ମୋଡ଼ିଲେ ପ୍ରେମ କରିବାରେ ବହୁ ଅସୁବିଧା ଭୋଗନ୍ତି । ଯୋଗ ଓ ତନ୍ତ୍ର ଶାସ୍ତ୍ରରେ ନାକକୁ "ବଙ୍କୁନାଳ" ବୋଲି କୁହାଯାଇଛି । ଏହା ମଧ୍ୟରୁ ନିତ୍ୟ "ହଂସ" ଏହି ଶବ୍ଦ ଉଚ୍ଚାରିତ ହେଉଛି । ଏହା ହିଁ ପ୍ରାଣବାୟୁ । ଯୋଗୀମାନେ ନାସାଗ୍ରକୁ ଦୃଷ୍ଟିଦେଇ ଧ୍ୟାନ କରନ୍ତି ଓ ତାଂକର ମାନସିକ ସ୍ଥିରତା ଆନୟନ କରନ୍ତି । ନାକକୁ ଚିପିଧରି "ଇଅଁଳା" ଓ "ପିଅଁଳା" ନାଡ଼ୀରୁ ପ୍ରାଣବାୟୁକୁ ସଂହତ କରି "ଶୁଷୁମ୍ନା" ନାଡ଼ୀରେ ପ୍ରବାହିତ କରାଇ— "ଷଡ଼ଚକ୍ର" ଭେଦ ମୂର୍ଦ୍ଧାଦେଶସ୍ଥ "ସହସ୍ରଦଳ କମଳ" ଭିତରେ ରାଧାକୃଷ୍ଣଂକର "ନିତ୍ୟରାସ" ବା ଅଲେଖ ନିରଞ୍ଜନଙ୍କର "ଜ୍ୟୋତିଦର୍ଶନ" ସମ୍ଭବ ହୋଇଥାଏ ବୋଲି ସାଧକମାନଂକ କଥାରୁ ଜଣାପଡ଼େ । ଆମ ସ୍କୁଲର ଯଦୁମଣି ପଣ୍ଡିତେ ସର୍ବଦା ଘରୁ ଅନୁକୂଳକରି ବାହାରିଲାବେଳେ ଆଗ ନାକଟିପି ନିଶ୍ୱାସ ବାରନ୍ତି । ଚୁମ୍ବନ ରସିକମାନେ ନାୟିକାର ନାସାଗ୍ରକୁ ଚୁମ୍ବନରେ ଉତ୍ତପ୍ତ ନକରି ପାରିଲେ ସେମାନଂକ ମନରେ ଅବଶୋଷ ରହିଯାଏ । ରାମଦାସ ବାବାଜୀ ନାସାଗ୍ର ପର୍ଯ୍ୟନ୍ତ ରାମାନନ୍ଦୀ ତିଳକ ନ ଲଗାଇ ମଠ ଭିତରୁ ପଦାକୁ ବାହାରନ୍ତି ନାହିଁ । ନାକରେ ପାଣି ବା ଘିଅ ପିଇ କେବଳ ଶ୍ୱାସନଳୀ ପରିଷ୍କାର ଦେଖାଯାଏନା—ମସ୍ତିଷ୍କକୁ ମଧ୍ୟ ବଳିଷ୍ଠ ଓ ଶୀତଳ ରଖାଯାଇପାରେ । କେତେକ ନାକ ଦ୍ୱାରା ପାଣି ଓ ପବନ ଉଭୟ ପିଇଥାନ୍ତି, ମୋଟ ଉପରେ ଜଳ ଓ ବାୟୁ ଉଭୟ ଏହି "ନାକ" ଦ୍ୱାରା ହିଁ ଗ୍ରହଣ କରିବା ସମ୍ଭବ ହୋଇଥାଏ ।

ବଜେଟ୍ ଭାଷଣର ମର୍ମକଥା ଜାଣିବାଲାଗି ଆମ ଦେଶର ବହୁ ସାଧୁ ବ୍ୟବସାୟୀମାନେ ଆସେମ୍ବ୍ଲି ବା ପାର୍ଲମେଣ୍ଟ ଦୁଆର ମୁହଁରେ କିମ୍ବା ଅର୍ଥମନ୍ତ୍ରୀଙ୍କ କୁକୁର ପାଖରେ ବହୁ ଆଗରୁ ନାକେଇଥାନ୍ତି । ଟିକସ ବା କଣ୍ଟ୍ରୋଲର ସୂଚକ ପାଇଗଲେ ହିଁ ତାହା ଜାରି ହେବା ପୂର୍ବରୁ ଚଡ଼ା ଦାମରେ ଜିନିଷପତ୍ର ଛାଡ଼ିଦେବେ ନହେଲେ ଗୋପନ କରିଦେବେ । ବିରୋଧୀଦଳଂକ

Digitized by srujanika@gmail.com

ନାକ ଭୂଇଁରେ ନ ଘୁଷୁରିବା ଯାଏ ଖେଳ୍ ବେଳେ ଓ ଖେଳ୍ ପରେ ସବୁକାଣ୍ଡ ଦଳଂକ କାନକୁ ଫୁରୁସତ ଥାଉ ନଥାଉ ନାକକୁ ଆଦୌ ଫୁରୁସତ୍ ନଥାଏ । ପ୍ରଥମ ପିରିଅଡ୍‌ରେ ପାଠ ପଢ଼ାଇବାଲାଗି ସ୍କୁଲ୍ କଲେଜର ଶିକ୍ଷକ ଓ ଅଧ୍ୟାପକମାନେ ନାକରେ କାନରେ ଯାହା ଖଣ୍ଡେ ପୁରାଇଦେଇ ପନ୍ଦର ମିନିଟ୍ ପୂର୍ବରୁ ପହଞ୍ଚିବାକୁ ବାଧ୍ୟ । ସ୍ତ୍ରୀ କଥାରେ ନାକ ଧରି ଦେଢ଼ହଜାର ଥର ବସ୍ ଉଠ୍ ହେବା ପୁରୁଷ ପୁଙ୍ଗବ ଯଦି ଦେଖିବାକୁ ଚାହାନ୍ତି—ତେବେ ଦୟାକରି ଗୋଟିଏ ଦର୍ପଣ ଆଗରେ ଛିଡ଼ାହୋଇ ଦେଖନ୍ତୁ । ମୋ ବଡ଼ପୁଅର ତ ନାକ ଅଗରେ ରାଗ । ସେ ଯେତେ ସୁନ୍ଦରୀ ଫିଲ୍ମଷ୍ଟାର୍‌ଙ୍କ ଫଟୋ ଚରି କରି ଆଣି ବହିରେ ମଲାଟ ମଢ଼ାଇଥିଲା—ମୋ ସାନଝିଅ ସେ ସମସ୍ତଙ୍କର ନାକ ଚଞ୍ଚେଇ ନଷ୍ଟ କରିଦେଇଛି । ତନ୍ୱୀ ଶ୍ୟାମା ଶିଖରୀ ଦଶନା ରମ୍ୟପକ୍ୱ ବିମ୍ବଧରା ମୋର ମାନଶାଳୀ ଯେତେବେଳେ ନାକ ଛିଞ୍ଚାଡ଼େ ନା !! ଆହ୍—ଆହ୍— ସେତେବେଳେ ମନ ଓ ଚିତ୍ତରେ ଖାଲି ଛୁରୀ ଚାଲିଯାଏ । ଥରେ ମୋର ସ୍କୁଲ ଜୀବନରେ ବିଷ୍ଣୁଶର୍ମାଙ୍କ ହିତୋପଦେଶ ପଢ଼ାଚାଲିଥିବା ବେଳେ ମୁଁ ପଛ ବେଞ୍ଚରେ ବସି ଗୋଟିଏ ପ୍ରେମ କବିତା ଲେଖୁଥିଲି । ସଂସ୍କୃତ ପଣ୍ଡିତେ ତାହାକୁ ଦେଖି ନାସିକା କୁଞ୍ଚନକରି ଯାହା କହିଥିଲେ, ମୋର ମନେଅଛି । ସେ କହିଥିଲେ—"ଆରେ ଅଧମ ! ଆରେ ଅକାଳକୁଷ୍ମାଣ୍ଡ ! ତୋର ଅଧଃପତନ ନିଶ୍ଚିତଭାବେ ସମାଗତ । ବ୍ରହ୍ମଚର୍ଯ୍ୟ ପାଳନ କର, ନତୁବା ଉନ୍ମାର୍ଗଗାମୀ ତୋର ବିନାଶ ଅବଶ୍ୟମ୍ଭାବୀ ।" ମୋର ଶାଶୁଙ୍କର ନାକଟେକା ଦେଖିଲେଇ ମୋର ବାପାଙ୍କ ନାକକୁ ରାଗ ଚଢ଼ିଯାଏ । ଯଦି ଠିକ୍ ସମୟରେ ଠିକ୍ ସ୍ଥାନକୁ ଯିବାର ଅଛି, ତେବେ ସ୍ତ୍ରୀଙ୍କ ଉପରେ ବିଶ୍ୱାସ ନେବି କର୍ତ୍ତବ୍ୟ । ସ୍ତ୍ରୀଙ୍କ ସଙ୍ଗେ ପ୍ରସ୍ତୁତ ହୋଇ ଆସି ଷ୍ଟେସନରେ ପାଦ ଦେଇଥିବେ କି ନାହିଁ—ଆପଣଙ୍କ ନାକ ଉପର ଦେଇ ଟ୍ରେନ୍‌ଟି ଚାଲିବାକୁ ଆରମ୍ଭ କରିଦେବଣି । ଅଉ ଟିକେ ବ୍ୟାଗ୍‌ଟି ଫୋପାଡ଼ି ଦେଇ ଆପଣଙ୍କ ସ୍ତ୍ରୀ ନାସିକା ଫୁଲାଇ ଆପଣଙ୍କୁ ଦୟାକରି କହିବେ—"ଠିକ୍ ସମୟର ଦୁଇଘଣ୍ଟା ଆଗରୁ ସ୍ତ୍ରୀମାନଙ୍କୁ ପ୍ରସ୍ତୁତ ହେବାକୁ କୁହାଯାଏ । ଏତିକି କଥା ତୁମେ ମୋ ସଙ୍ଗେ ଏତେଦିନ ରହି ମଧ୍ୟ ଆଜଯାଏ ବୁଝିପାରିଲ ନାହିଁ ? ଧିକ୍ ତୁମର ପୌରୁଷକୁ ।" ସେତେବେଳେ ଯଦି ଆପଣଙ୍କ ସ୍ତ୍ରୀଙ୍କ ନାକ ଉପରେ ଗୋଟିଏ ଖିଧା ବସାଇ ଦେଇ ନ ପାରୁଛନ୍ତି, ତେବେ ନିଜ ନାକ ଉପରେ ଦୁଇଟି ଖିଧା ବସାନ୍ତୁ ।

Digitized by srujanika@gmail.com

କେବଳ କୁକୁର ଯେ ତାର ଘ୍ରାଣଶକ୍ତି ଦ୍ୱାରା ତାର ମାଲିକ ଓ ମାଲିକର ଘରକୁ ଚିହ୍ନିପାରେ ତା'ନୁହେଁ, ମୁଁ ମଧ୍ୟ ମୋର ନାକ ଦ୍ୱାରା ଅନ୍ଧାର ଭିତରେ ମୋର ନିଜର ଗେଞ୍ଜି, ଭାଇନାଙ୍କ ସାର୍ଟ୍, ନନାଙ୍କ ଚଦର, ମୋ ବୋଉର ଶାଢ଼ୀ, ମୋ ସ୍ତ୍ରୀଙ୍କ ବ୍ଲାଉଜ୍ ଓ ମୋ କୁନି ପୁଅର ବିଛଣା ଚଦର ବା ପ୍ୟାଣ୍ଟ ଚିହ୍ନି ନେଇପାରେ । ମୁଁ ଅଜୀର୍ଣ୍ଣ ରୋଗୀ—ବେଶୀ ଖାଇପାରେ ନାହିଁ, ତେଣୁ ଅଘ୍ରାଣ ଦ୍ୱାରା ଅର୍ଦ୍ଧେକ ଭୋଜନ ସମାପନ ନକଲେ ମୋର ଭୋଜନ ସମ୍ପୂର୍ଣ୍ଣ ହୋଇପାରେନା ।

ପୃଥିବୀରେ ସବୁ ଜୀବଜନ୍ତୁଙ୍କ ଭିତରେ ହାତ, ଗୋଡ଼, ଆଖି, କାନ ଇତ୍ୟାଦିର ସାମାନ୍ୟ ପାର୍ଥକ୍ୟ ଅଛି । ମାତ୍ର ନାକର ପାର୍ଥକ୍ୟ ଖୁବ୍ ବେଶି । ବେଙ୍ଗର ଜମା ନାକ ନାହିଁ; ଅଥଚ ହାତୀର ନାକଟାକୁ ଦେଖନ୍ତୁ ତ ! ! କିନ୍ତୁ ବେଙ୍ଗ ବିଚରାକୁ ଏକଥା ବୁଝାଇ ଦେଲେ ସେ ନାକରେ କାନ୍ଦେ । ବେଙ୍ଗୁଲି ତ ନାକବାଲା ଦେଖିଲେ ହିଂସାରେ ଜଳିଯାଏ ! ! ସେଇ ଯେଉଁ ଗପଟା—ହାତୀଟିଏ ରାସ୍ତାରେ ଝୁଲି ଝୁଲି ଲମ୍ବା ନାକ ହଲାଇ ଚାଲୁ ଚାଲୁ ବେଙ୍ଗୁଲି ନାନୀ ଉପରେ ଟିକିଏ ତା ପାଦ ବାଜିଗଲା । ଆଉ ତାକୁ ସମ୍ଭାଳେ କିଏ ? ସଙ୍ଗେ ସଙ୍ଗେ ଅଣ୍ଟାରେ ଦୁଇ ହାତ ଦେଇ କଜିଆ କରି ବସିଲା ବେଙ୍ଗୁଲିନାନୀ—"ଲମ୍ବା ନାକରେ ଗୋଦରା ଗୋଡ଼ା ! ତୁ ମାଣିକ କିପାଇଁ ମାଡ଼ୁ ?"

ବେଙ୍ଗୁଲିନାନୀର ଧାରଣା ଯେ, ରୂପରେ ସେ ମାଣିକଟିଏ; ହାତୀ କିନ୍ତୁ ଟିକିଏ ଅବହେଳା, ଟିକିଏ କୌତୁକ, ଆଉ ଟିକିଏ ରସିକତା କରି କହିଲା—

"ଚେପେଟୀ ନାକୀ ଲୋ ଦହି ସୁଡୁକୀ—ତୁ ବାଟରେ କିପାଇଁ ପଡ଼ୁ ?"

ଆଉ ବେଙ୍ଗୁଲିନାନୀକୁ ସମ୍ଭାଳେ କିଏ ? ତାକୁ ଫେର୍ ଏ ଲମ୍ବାନାକୀ କହୁଛି—"ଚେପେଟୀ ନାକୀ !!" ତା' ମର୍ମସ୍ଥଳକୁ କଥାଟା ବାଜିଗଲା । (ପାଖ) ପାଖରେ ବସିଥିଲା—ଏଣ୍ଡୁଅଟିଏ ଶ୍ରୀଧର ପାତ୍ର । ମୁଣ୍ଡ ଟେକାଇ ବେଙ୍ଗୁଲିନାନୀର ଫୁଲେଇପଣ ଦେଖୁଥିଲା । ତାକୁ-ଇ ସାକ୍ଷୀ କରି ବେଙ୍ଗୁଲିନାନୀ କହିଲା—'ଶ୍ରୀଧର ପାତ୍ରରେ ଶ୍ରୀଧର ପାତ୍ର ! ମୁଁ କନା ହେଲି ଚେପେଟୀନାକୀ !"

ଶ୍ରୀଧର ପାତ୍ର ଏଣ୍ଡୁଅକୁ ଏବେ ଭଲ ବାଗଟିଏ ମିଳିଗଲା । ଫୁଲେଇ ବେଙ୍ଗୁଲିନାନୀ ତ ତାକୁ କଥାଇ କହେନା ! ବର୍ତ୍ତମାନ ଅଖଣ୍ଡରେ ପଡ଼ି ତାକୁ

Digitized by srujanika@gmail.com

ସାକ୍ଷୀ ମାନୁଛନ୍ତି । ଏଣ୍ଡୁଅ କଣ୍ଠରେ ଟିକିଏ ବ୍ୟାଜ ସ୍ତୁତିର ବଦ୍ଧ୍ୱାମ୍ଳକ ଧ୍ୱନି ମିଶାଇ କହିଲା—

"ଭୂମି ହୁଅଲେ ସରଗ ଅପସରୀ
ନେଚ (ନୀଚ) ଲୋକ ସଙ୍ଗ ନକର କଳି ।"

ପିଲାବେଳେ ଏ ଗପ ଶୁଣି ନିଜକୁ ସୁନ୍ଦରୀ ଆଉ ପ୍ରେମଯୋଗ୍ୟା ମନେ କରୁଥିବା ଚେପେଟିନାକୀ ଫୁଲେଇ ବେଙ୍ଗୁଲୀନାମୀ ପ୍ରତି କିନ୍ତୁ ମୋର ସମ-ବେଦନା ଉପୁଜି ପଡ଼ୁଥିଲା । ବିଚ୍ଛରୀ ବେଂଗୁଲୀନାକୀ ! ନାଥୁଲି ପାଥୁଲି ହୋଇ ସତେ କି ଖୁବ୍ ଗେଡ଼ି ହୋଇ କାଳୀ ଅପରେଛରୀ ମାଇପିଟିଏ । ତେଲି ହଳଦୀରେ ଗୁରୁଗୁରୁ ହୋଇ—ତାର ପେଚୁର ଆଖିକୁ କଳା କଜଳରେ ସାଲୁ ବାଲୁ କରି—ଚେପେଟା ନାକକୁ ଫୁଲେଇଫାଲେଇ ରାସ୍ତା ମଝିରେ ଦମ୍ଭ ହୋଇ ଠିଆହୋଇଛି । ଆଉ—ତାର ପୁଣି ଏଇ ବେଙ୍ଗ ଫେଙ୍ଗ, ମୂଷା ଫୂଷା, ଗୁଣ୍ଡୁଚୀ ଫୁଣ୍ଡୁଚୀ, ଏଣ୍ଡୁଆ ଫେଣ୍ଡୁଅଙ୍କ ଉପରେ ଆଦୌ ଦୃଷ୍ଟି ନାହିଁ । ଦୃଷ୍ଟି ଯାଇ ଏକଦମ ଲମ୍ବାନାକୀ ହାତୀ ଉପରେ । ମାତ୍ର କଣ ହେଲା ? ଖାଲି ଅବହେଳାର କୌତୁକ ରସିକତା ଦେଖାଇ ନିର୍ମମ ଭାବରେ ହାତୀ ତାକୁ ଠେଲିଦେଇ ଚାଲିଗଲା । ଅବମାନନାର ନିଷ୍ଫଳ ନିରୁପାୟ ଅନୁଶୋଚନାରେ କ୍ରୋଧ ଅଭିମାନ ଓ କାରୁଣ୍ୟରେ ବିଚ୍ଛରର ପେଟ ଫୁଲିଉଠିଲା । ବିଚ୍ଛରୀ ବେଂଗୁଲୀନାକୀ ! !

ଛାଡ଼ନ୍ତୁ—ଚେପେଟିନାକୀଙ୍କ କଥା ତ ଶୁଣିଲେ—ଗାଁ କନ୍ୟା ଶିଙ୍ଗାଣୀ ନାକୀ ବୋଲି ଭାବି ମୋର ନି: ପ୍ରା: ସ୍କୁଲର କ୍ଲାସମେଟ୍ ଶ୍ରୀମତୀ ବିଦ୍ୟୁଲ୍ଲତା ଦେଈଙ୍କୁ ବାହା ନହୋଇ ମୁଁ ଯେତେ ପସ୍ତେଇ ହୋଇଛି—ସେ କଥା କାହାକୁ ବା କହିବି ? ଅହା— ହା ! ଡେଙ୍ଗାହୋଇ ଦୁଧ-ଅଳତା ରଙ୍ଗର ତନୁପାତଳୀ ଝିଅଟିଏ । ଆଉ ତାର ସେ ନାକର ଶୋଭା ! ଗୋଲାପ ପାଖୁଡ଼ାଭଳି ନାକଟିର ଗୋଟିଏ ପାଖରେ ଜୁଳୁଜୁଳୁ ହୋଇ ସୁନାର ଗୁଣ୍ଠ ପାନପତ୍ରଟିଏ । ଆହା— ଆହା ! ନାକ ତ ନୁହଁ—ଫୁଲଟିଏ, କିନ୍ତୁ ଆଉ ଭାବିଲେ କଣ ହେବ ? ଶେଷରେ ଭାଗ୍ୟ ପୁଣି ପକେଇଲା ନେଇ ଗୋଟିଏ ଚେପେଟିନାକୀର ପାଲରେ ।

କିନ୍ତୁ ଏଣେ ଉଚାନାକଟିଏ ଦେଖି ଭାଇବୋହୂଟିଏ ବାଛିଲି ଯେ—ମୋ ସାନଭାଇ ପ୍ରତିଦିନ ମୋ ଉପରେ ନାକ ଝାଡ଼ୁଛନ୍ତି । ସାନବୋହୂଙ୍କର ମୁନିଆ

Digitized by srujanika@gmail.com

ନାକଟା କୁଆଡ଼େ ବଙ୍କାଇଲା ତାର ମର୍ମସ୍ଥଳକୁ ନଇଁ ବସେ । ଏଣେ ଭାଇ-ବୋହୂଙ୍କର ଅଭିଯୋଗ ହେଉଛି—ସ୍ତ୍ରୀର ନାକଛୁଅଁଡ଼ା ମାଡ଼ ଯେ ସହି ନପାରେ, ସେଭଳି ସ୍ୱାମୀକୁ ନେଇ ମଧୁମୟ ଦାମ୍ପତ୍ୟ ଜୀବନ ଯାପନ କରିବା କାଠିକର ପାଠ । ନାକ ଲାଗି ଦୁଇପଟୁ ମାଡ଼ରେ ମୁଁ ବିଚରା କରେ କଣ ?

ଗଳ୍ପ, କାହାଣୀ ଓ ପୁରାଣଆଦିରେ "ନାକ"ର ସ୍ଥାନ ଖୁବ୍ ଉଚ୍ଚରେ । ବାଲ୍ମୀକିଙ୍କ "ରାମାୟଣ" ତ ସୂର୍ପଣଖାର ନାସିକା-ଛେଦନ ବ୍ୟାପାର ଉପରେ ଗଢ଼ି ଉଠିଛି । ତାଡ଼କାକୁ ମାରି ଆଗରୁ ଅବହେଳାରେ ନାରୀହତ୍ୟା କରି ସାରିଥିବା ରାମଚନ୍ଦ୍ର ତ ଅକ୍ଳେଶରେ ଦୁଷ୍ଟା କାମୁକା ସୂର୍ପଣଖାକୁ ଜୀବନରେ ମାରିପକାଇଥାନ୍ତେ । ଗୋଟିର ନାରୀ ପକ୍ଷରେ ମୃତ୍ୟୁ ବରଂ ଶ୍ରେୟସ୍କର—ମାତ୍ର ତାର ମୁଖଲାବଣ୍ୟ ସମୁଦ୍ରର ମୁଖ୍ୟ ସେତୁ ଏଇ ନାକଟାକୁ ଭାଙ୍ଗିଦେଇ—ରାମଲକ୍ଷ୍ମଣ ତା'ର ନାରୀତ୍ୱକୁ ଯେଉଁ ବ୍ୟର୍ଥତାର ଅବମାନନାରେ ଅଶ୍ରୁସିକ୍ତ କରିଦେଲେ, ସେହି ଅଶ୍ରୁର ପ୍ରଳୟଙ୍କରୀ ବନ୍ୟା ପ୍ଲାବନରେ ରାମ ଲକ୍ଷ୍ମଣଙ୍କର ସମସ୍ତ ସୁଖ ଶାନ୍ତି ସୁଅ ମୁହଁରେ ଖଣ୍ଡିଏ କୁଟାଭଳି କେଉଁଆଡ଼େ ଭାସିଗଲା । ବିରାଟ ମହୀମାମୟ ପୁରୁଷ ରାମଚନ୍ଦ୍ରଙ୍କ କୀର୍ତ୍ତିମୟ ଜୀବନ ଛନୋଟି ଅକୀର୍ତ୍ତିର ଗ୍ଳାନିପାତରେ ମଳିନ ହୋଇଛି—ସ୍ୱୟଂ କବିଗୁରୁ ବାଲ୍ମୀକ ମଧ୍ୟ ତାର ସମୁଚିତ ଯୁକ୍ତି—ସମ୍ମତ କାରଣ ଦର୍ଶାଇପାରି ନାହାନ୍ତି । ବାଳୀବଧ, ଗର୍ଭବତୀ ସୀତାଙ୍କୁ ବିସର୍ଜନ ଓ ତୃତୀୟଟି ହେଉଛି ସୂର୍ପଣଖାର କର୍ଣ୍ଣ ସଙ୍ଗେ ଏହି ନାସିକା ଛେଦନ ।

ମାତ୍ର ଖୁଦୁରୁକୁଣୀ ଓଷା ବହିବେ "ତଅପୋଇ" କାହାଣୀରେ ସାତ ଭାଇ ଭାଇଜରର ସୁନାନାକୀ ଭଉଣୀ ଅତି ଅଲଅଳ । ତଅପୋଇକୁ ତାର ଭାଇମାନଙ୍କ ଅବର୍ତ୍ତମାନରେ ତାର ଛଅଟିଯାକ ଦୁଷ୍ଟା ଭାଉଜ ଯେମିତି "ପାଦରେ ମୁଣ୍ଡାମାଟି ଭରି—ଉପରେ ଭାତ ଗୋଟି ଗୁରି" ଦେଇ ରାତି ଅଧରେ ଅଗ୍ନାଗ୍ନି ବନସ୍ତକୁ ଛେଳି ଜଗିବାକୁ ପଠାଇ ହଇରାଣ କରିଥିଲେ, ଆଉ ଶେଷରେ ସାତ ଭାଇଯାକ ବଣିଜରୁ ଫେରି—ଏ ବାତେମୀ ପାଇ ଯେମେନ୍ତ ଭାଉଜଙ୍କର ନାକ କାଟି ଉପରି କଣ୍ଟା ତଳ କଣ୍ଟା କରି ପୋତିଦେଲେ, ତାହା ପିଲାଦିନେ ଆମ ମନକୁ ବେଶ୍ ପାଉଥିଲା । ଅସତୀ ସ୍ତ୍ରୀ ଲୋକମାନଙ୍କର କାନ ସଙ୍ଗେ ନାକ କାଟିବା ବିଧି ଆମ ଦେଶରେ ପ୍ରଚଳିତ ଥିଲା……… ।

Digitized by srujanika@gmail.com

ସେଇ ଯେଉଁ "ନାକୁଆ କଣ୍ଡଗ" କଥା ଆମ ପିଲାଦିନେ ଶୁଣିଥିଲେଇଁ—ତାହା ଏବେ ବି ଆପଣମାନଙ୍କ ମନରେ ଅନୁରଣିତ ହୋଇଉଠୁଥିବ । କର୍ଣ୍ଣାଟ ବୋଲି ଦେଶ—ତହିଁ ଲକ୍ଷ୍ମୀଧର ବୋଲି ସାଧବ । ତାର ଛଅ ପୁଅ ଛଅ ବୋହୂ । ପାଞ୍ଚଟିଯାକ ବୋହୂ ତହୁଁ ବଳି ତହୁଁ ବଳି । ସମସ୍ତେ ମହା ମହା ସାଧବଙ୍କ ଅଲିଅଳି ଝିଅ । ସବୁର ବାପଘରୁ ପ୍ରତିମାସରେ ଆସେ କେତେ ଭାରଭାର—କଳା ଢୁମର ପାଟ ଗଜମୁକୁତାର ମାଳା ମଣି ମୁକୁତାର କେତେ ଝବ କେତେ ଚୁଡ଼ୀ, କେତେ କଙ୍କଣ । କେତେବେଳେ ପୁଣି ଆସେ କେତେ ପ୍ରକାର ଲଡ଼ୁ ମିଠେଇ, ମନୋହର, ମଣ୍ଡା, ଶିରସା, ଧନୁମୁଆଁ, କ୍ଷୀରସାଗର, ରସକେଳୀ, ରସଭୋଗ, ମଗଜଲଡ଼ୁ । ମାତ୍ର ସବା ସାନବୋହୂ ବାପଘରୁ କିଛି ଆସେନା । କିଏ ଅଛି ଯେ ଭାରଭାର ପଠାଇବ ? ଲୋଡ଼ିବ—ଆଣିବ ? ସାନବୋହୂ ସେହି ଦୁଃଖରେ ମନ ମାରିଦେଇ ରହିଥାଏ । ଛଅଟିଯାକ ବୋହୂ ନଈକୁ ଯାଆନ୍ତି ସକାଳପହରୁ ଗାଧୋଇ । ଦାନ୍ତ ଘଷୁ ଘଷୁ, ଚୂଡ଼ି ମାଜୁ ମାଜୁ, ସୁନାଥାଳି ପରି ଚନ୍ଦ୍ରଉଦିଆ ମୁହଁଟିମାନଙ୍କୁ ଝଡ଼ା ପଣତରେ ଘଷୁ ଘଷୁ, ପିଠିଯାଏ ଲମ୍ବି ପଡ଼ିଥିବା ଓଦା ବାଳ ଝାଡ଼ୁ ଝାଡ଼ୁ ନଈ ଆରପାରି ଲୁଚିଉଡ଼ିଆ ଦୂର ଦିଗ୍‌ବଳୟ ଆଡ଼କୁ ଚାହିଁ ଆବେଗ ଉଚ୍ଛ୍ୱାସରେ ହାତ ବଢ଼େଇ ଦେଇ କହିଉଠନ୍ତି—

ହେଇଟି ଦେଖ୍‌ଲେ ନାମି ! ମୋ ବାପଘର ହେଇ ଦିଶୁଛି—ମୋ ବୋଉ ଘିଅ ରାନ୍ଧୁଥିବ—ଧୂଆଁ ଉଠୁଛି ।

ଆଉ କିଏ କହେ—

ମୋ ବାପଘର ଡେଙ୍ଗା ନଡ଼ିଆଗଛ ଦିଶୁଛି ନାମି ଦେଖଲେ !

କିଏ ପୁଣି କହେ—ମୋ ବାପଘର ମଉଡ଼ ଦିଶୁଛି ଲୋ ନାମି ଦେଖ୍ ।

ମାତ୍ର ସବା ସାନବୋହୂଟି ମନ ମାରିଦେଇ ନଈର କଳାଢୁମର ପାଣି ଉପରେ ଆପଣାର ହିନମାନ ମୁହଁଟିର ବିଷାଦ ମଳିନ ପ୍ରତିବିମ୍ବଟିକୁ ଅନାଇ ଦେଖୁଥାଏ । ଟପ୍ କରି ଝରିପଡ଼େ ବିନ୍ଦୁଏ ଲୁହ ନଈର କଳାଢୁମର ପାଣି ଉପରେ । ନଈର ଛାତି ଚହଲିକି ଉଠେ । ବଡ଼ବୋହୂ ଛିଗୁଲେଇ କରି ହଟେଇ ପଚାରେ—କାହିଁକି କାନ୍ଦୁଛୁ କିଆଁ ଲୋ ସାନବୋହୂ ? ତୋ ବାପଘର କେଉଁ ଦିଗରେ ବା ?

Digitized by srujanika@gmail.com

ସାନ ବୋହୂ ନାକ ସୁଁ ସୁଁ କରି କରୁଣ କଣ୍ଠରେ କହେ—

ଆଉ ବାପଘର କୋଉଠି ? ପୋଡ଼ା ଭାଗ୍ୟ ! ବଣିଜ କରିବାକୁ ଯାଇ ମଝିଦରିଆରେ ବୋଇତ ବୁଡ଼ି ଗୋଟିଏ ବୋଲି ଭାଇ ସେ ମଲା । ଆଉ ତାକୁ ତ ଝୁରି ଝୁରି ବାପା ମାଆ ମଲେ । ଆଉ ସେ ନିଆଁ ଲଗା ବାପଘରୁ କି ମିଳିବ ?

ସାନ ବୋହୂର ଆଖିରୁ ଥପ ଥପ ହୋଇ ଝରିପଡ଼ୁଥିବା ଲୁହ ଧାରକୁ ନେଇ ନଈର ସୁଅ ଛଳ ଛଳେଇ ବହିଯାଏ—ଦୂର ଦରିଆକୁ ।

ଏଣେ କଳ୍ପ ସବୁରି ଅଜାଣତରେ ନଈବନ୍ଧ ତଳେ ସାହାଡ଼ା ଗଛ ସନ୍ଧିରେ ଲୁଚି ରହି ସବୁ କଥା ଦେଖୁଥାଏ ଆଉ ଶୁଣୁଥାଏ—ଦୁର୍ଭାଗ୍ୟର ମୂର୍ତ୍ତିମନ୍ତ ବିଗ୍ରହ ନାକୁଆ କଣ୍ଡିରା ।

କଟିଗଲା ଦିନ ଗଡ଼ ହୁଏ । ଜାମା ଜୋଡ଼ ହୋଇ ଛତା ଜୋତା ପିନ୍ଧି—କାନରେ କୁଣ୍ଡଳ, ବେକରେ ରତ୍ନହାର ଆଉ ମଥାରେ ପଗଡ଼ି ଲଗାଇ ଦିନେ ଆସି ପହଞ୍ଚିଲା ନାକୁଆ କଣ୍ଡିରା । ସାଙ୍ଗରେ ଦୁଇଟା ଭାରୁଆ । ମନୋହରା, ଖସାଲଡ଼ୁ, ଧନୁମୁଆଁ, ମଣ୍ଡା, ଆରିଷା କେତେ କଣ ? ବୌଦପାଟ, ମାଣିକଝରି, ରତ୍ନଖଉଡ଼ି ମୁକୁତାମାଳା କେତେ କଅଣ ? କହିଲା—ମୁଁ ଆସିଛି କର୍ଣ୍ଣାଟ ଦେଶରୁ ସାନବୋହୂର ଭାଇ ସାଆନ୍ତ । ଗୃହିଲି ଯାଇଥିଲି ଦୂରମୁଲକ—ସାତ ସମୁଦ୍ର ତେର ନଈ ପାରି ହୋଇ—ବାଲିଦ୍ୱୀପ, ଶାକଦ୍ୱୀପ, ଲଙ୍କାଦ୍ୱୀପ, କ୍ରୌଞ୍ଚଦ୍ୱୀପ । ବାଟରେ ସମୁଦ୍ର ଭିତରେ ବୋଇତ ଉପରେ ବାହାଜାମା ହେଲା । ବୋଇତ ଡୁବିଲା । ମଝିଦରିଆରେ ଭାସି ଭାସି ଲାଗିଲି ଆସି ବଳି ଦ୍ୱୀପରେ । ସେଇଠି କଟିଗଲା ଦଶ ବରଷ । ଘରେ ଆସି ଦେଖିଲି—ମୁଁ ମରିଯାଇଛି ବୋଲି ଭାବି ବାପା, ମା, ଝୁରି ଝୁରି ମଲେଣି । ମନଦୁଃଖରେ ଭଉଣୀକୁ ଆସିଛି ସଙ୍ଗୋଳିବାକୁ ।

ପାଞ୍ଚ ଯାଆଯାକ ପଚାରିଲେ—କଲେ ସାନବୋହୂ ! ତୋର ଭାଇ ଆଇଚଲେ ଦେଖିଚୁ ନା ?

ଜୁଳୁ ଜୁଳୁ କରି ଛଳ ଛଳ ଅବୋଧ ଆଖିରେ ଗୁହିଁ ରହିଥାଏ ସାନବୋହୂ । ଏକମାତ୍ର ଭାଇ ଯେତେବେଳେ ବଣିଜ କରିବାକୁ ବୋଇତ ମେଲିଲା

Digitized by srujanika@gmail.com

ଦରଆରେ—ତାକୁ ସେତେବେଳେ ଆଠ ବରଷ, ଦେଖା ମେଡ଼ରେ କାର୍ତ୍ତିକେଶ୍ୱରଙ୍କ ଭଳି ଖାଇର ସେ ଚେହେରା ଛାଇ ଛାଇ ହୋଇ ମନେଅଛି । କିନ୍ତୁ ସେ' କଣ ସେଇ ଖାଇ ?

ମନ ଭିତରେ କିଏ ଯେମିତି ଉଚ୍ଛ୍ୱାସରେ ଖାଙ୍କି ପଡ଼ିଲା – ହୃଦୟ ଭିତରୁ କ୍ଷୀର ସମୁଦ୍ର ଉଛୁଳି ଉଠିଲା । ଆନନ୍ଦ ଆତିଶଯ୍ୟରେ ଯାଇ ଅଜାଡ଼ି ହୋଇ ପଡ଼ିଲା ଖାଇ ଉପରେ । ଛାତି ଉପରେ ମୁହଁ ରଖି ଆଖିବୁଜି ଡାକିଉଠିଲା— "ଖାଇ, ଖାଇ" । ନାକୁଆ କଣ୍ଢେଇ ନାକ ସୁଁ ସୁଁ କରି ମିଛେ ମିଛେ କାନ୍ଦୁଥାଏ । ଆଉ ସାନବୋହୂର ନରମ ଯୌବନର ଉତ୍ତାପକୁ ଉପଭୋଗ କରି ଆହୁରି ଅଧୀର ଆକୁଳତାରେ ଆତୁର ହୋଇଉଠୁଥାଏ--ଆଉ କହୁଥାଏ--

ଛିଇ - ଛି—କାନ୍ଦେନା ଲୋ, ସୁନାଭଉଣୀଟା ପରା ! ଆଜି ଖୁଲ ତତେ ସାଙ୍ଗରେ ନେଇଯିବ । ତେଣେ ଭାଉଜ ତୋ ବାଟଚାହିଁ ବସିଛି ।

ଅଧୀର ଆନନ୍ଦରେ ସାନବୋହୂ ଆଖି ମେଲିଲା । ମୋର ଭାଉଜ ହେଲାଣି ଖାଇ ? କେଉଁଦିନ ବାହାହେଲ ?

ଆଲୋ ନାଁ—ନାଁ ଏଠି ବାହାହୋଇଥିଲେ ତୋତେ ଲୋଡ଼ ନଥାନ୍ତା ? ତେଣେ ସାତ ସମୁଦ୍ର ତେରନଈ ଆରପଟେ ସୁବର୍ଣ୍ଣପୁର ବୋଲି ଦ୍ୱୀପ, ସେଠି ଅହିମାଣିକ ବୋଲି ରାଜା—ତା'ର ମଧୁମତୀ ବୋଲି ସୁନାନାକୀ ଜେମା । ସେଇ ଲମ୍ବେଇଦେଲା ବରଣମାଳା ମୋ ବେକରେ । ଖୁଲ ଦେଖିବୁ ।

ସାନ ବୋହୂର ଛାତି ଆନନ୍ଦ ଓ ବେଦନାରେ ଚଞ୍ଚଳ ହୋଇଉଠିଲା । ପାଞ୍ଚ ଯାଆଙ୍କ ଆଗରେ ଭୂଇଁରେ ପାଦ ଛୁଆଁଇ ମଥା ଦୁଲୁକେଇ, ନାକ ଫୁଲେଇ ଯାଇ ଛିଡ଼ା ହେଲା ସ୍ୱାମୀଙ୍କ ଆଗରେ ।

ହେଇ ଶୁଣୁଚ, ମୁଁ ଖାଇ ସାଙ୍ଗରେ ଯିବି । ଖାଇ ମୋତେ ଲୋଡ଼ି-ଆସିଛନ୍ତି । ନ ଛାଡ଼ିବ ଯଦି ହେଇ ଜାଣିଥା—ଘର ପଛପଟେ ବ୍ରାହ୍ମଣୀ ନଈର ବଡ଼ନ୍ତା ସୁଅ—ସେଠି ନାଗମୁଣ୍ଡା ଦଖଣ୍ଡ ହେଉଛି······

ଆଗେ ଆଗେ ଶୁଭୁଛି ନାକୁଆ କଣ୍ଢେଇ । ଖାଇର ଶୀତଳ ମଧୁର ଛନ୍ଦ ଆବରଣ ତଳେ ଏକ ପାଶବିକ ଲାଳସାର କୁତ୍ସିତ ବହ୍ନି ଦାଉ ଦାଉ ଜଳୁଛି ।

Digitized by srujanika@gmail.com

ଆଜ ତାର ପଡ଼େ ପଡ଼େ ଶୁଭୁଛି—ବହୁଦିନ ପରେ ପିତୃଗୃହମୁଖୀ ଘର-ସୋହାଗିନୀ ଅବୋଧ—ବାଳକାବଧୂଟିଏ । ମନେ ପଡ଼ୁଯାଉଛି—ବାପଘରର ପିଲାଦିନର କେତେ ହଜିଲା ସ୍ମୃତି—ବାପାଙ୍କର ସେଇ ହାତୀଦାନ୍ତର ପଲଙ୍କ, ରୂପାର କଠଉ, ଅଷ୍ଟରତ୍ନ ଯୋଡ଼ା ବଙ୍କୁଲବାଡ଼ । ଆଉ ମା'ର—ଓହୋ··· ଓହୋ···ଓହୋ··· ? କେତେ କଥା···କେତେ ସ୍ମୃତି, ମନ ପୁଣି ଚଞ୍ଚଳ ହୋଇଉଠୁଛି । କେଉଁ ସେ ମୁଲକର ପାତାଳପୁରର ନାଗରାଜାଙ୍କର ଅଲଅଲୀ କେଣବେଣୀ ଜେମା ମଧୁମଣି··· । ସେ ପୁଣି ତାର ଘରଜ···ସେ ପୁଣି ବସିଥିବ ବାଟଚାହିଁ ନଣନ୍ଦକୁ ତା'ର ଦେଖିବ ବୋଲି···ଇଃ······

କାଆ···କାଆ···କାଆ

କଏ ମ ?

ମଲା···କାଉଟାଏ କିଆଁ ପଡ଼େ ପଡ଼େ ଗୋଡ଼େଇଛି କାଆ କାଆ ହୋଇ ? ହଇ, ହଇମ ! କଣ କହୁଛି ସେ' କାଉଟା ?

ପୁଣି ଶୁଭିଲା କାଆ···କାଆ···କାଆ ।

ଯାହାଘର ଝିଅ କଲେ ଯାହାଘର ବୋହୂ !

ନାକୁଆକଣ୍ଡରା ଯାଙ୍କେ କେତେ ପନ୍ଥ ଯାଉ ?

କଣ କହୁଛି ସେ' ଅଲକ୍ଷଣା କାଉଟା ହଇ ?

ନାକୁଆ କଣ୍ଡରା ପଛକୁ ଚାହିଁଲା । ତାର କୁଟିଳ ଭ୍ରୂ ଦୁଇଟା ଆହୁରି ତୀକ୍ଷ୍ଣ ଆଉ ବକ୍ରହୋଇ ଉଠି ପୁଣି ସରଳ ହୋଇଗଲା ।

କିଛି ନୁହଁ ଲୋ ଭଉଣୀ ! ଆ' ଚାଲିଆ । ସେ ପାଜି କାଉଟା ମୁଢ଼ିଗଣ୍ଡେ ଖାଇବ ବୋଲି କହୁଛି ।

ନାକୁଆ କଣ୍ଡରା ମୁଢ଼ିଗଣ୍ଡେ ପକାଇଦେଇ ଆଗକୁ ଚଞ୍ଚଳକରି ପାଦ ବଢ଼ାଇଲା ।

ଆ' ଚାଲିଆ ଭଉଣୀ ! ସଞ୍ଜ ହୋଇଯିବ ।

Digitized by srujanika@gmail.com

ମୁଡ଼ିତକ ଖାଇସାରି ପୁଣି ପଦକେ ପଦେ ଗୋଡ଼େଇଲା କାଉଟା ।

କା···କା···କା

ସାହୁଘର ଝିଅ କଲେ ସାହୁଘର ବୋହୂ,

ନାକୁଆ କଣ୍ଢେଇ ସାଙ୍ଗେ କେତେ ପଛ ଯାଉ ।

ସାନବୋହୂର କଅଁଳ ଗ୍ଭଡ ଏଥରକ ସତକୁ ସତ ଥରିଉଠିଲା । ଏ କଅଣ ଭାଇ ? କାଉଟା ଯେ ପୁଣି ଏମିତି ଅଲକ୍ଷଣା କଥା କହୁଛି ।

ନାକୁଆ କଣ୍ଢେଇ ପଛକୁ ପୁଣି ଲେଉଟି ଗ୍ଭହିଁଲା ତାର କୁଟିଳ ଆଖିଦୁଇଟା ପୁଣି କ୍ଷୀଣ ଓ ବନ୍ଦହୋଇ ଉଠୁ ଉଠୁ ଉପୁରେ ବୁଜିହୋଇ ଆସିଲା । ତଥାପି ଗ୍ଭହାଣୀକୁ ସହଜ ଓ ସାବଧାନ କରି ସେ ଚଞ୍ଚଳ ହୋଇଉଠିଲା—

ଆ' ଗ୍ଭଲଆ ଭଉଣୀ ! ପାହାଡ଼ ଆରପଟକୁ ଗ୍ଭହାଁ ତ—ଧର୍ମଦେବତା ବୁଡ଼ିବା ଉପରେ । ଆଗରେ ପୁଣି ପଡ଼ିବ ଗୋଟିଏ ନଈ, ଗୋଟିଏ ଅରଣ୍ୟ— ତା'ପରେ ଯାଇ ଆମ ରାଜ୍ୟ । ସେ ପାଜି କାଉଟା ଖଣ୍ଡେ ମିଠାଇ ଖାଇବ ବୋଲି କହୁଛି ।

ଏମିତି କାଉର ବାରମ୍ବାର ସତର୍କ ବାଣୀକୁ ଉଡ଼ାଇ ଦେଇ, ନାକୁଆ କଣ୍ଢେଇ ସାଧବଘରର ସୁନ୍ଦରୀ ସାନବୋହୂକୁ ଆପଣାର ଘରକୁ ଭୁଲାଇ ନେଇଗଲା । ଗ୍ଭଉନ୍ତୁ—ଖୁବ୍ ଗୋଟାଏ ଲମ୍ବାରାସ୍ତା ମଧ୍ୟ ସେମାନଙ୍କୁ ଯିବାକୁ ପଡ଼ିଥିଲା । ଏତେ ବଡ଼କଥା ଏଠି କହି ହେବନାହିଁ । ମାତ୍ର ଆଶ୍ୱାସନାର କଥା ଯେ କାହାଣୀଟି ଦୁଃଖାନ୍ତ ନୁହେଁ । ନାକୁଆ କଣ୍ଢେଇ ତା'ର ଏହି ପାଶବିକ ଲାଳସାର ପୁରସ୍କାର ପାଇଥିଲା । ନାକ କଟାହୋଇ—ମୁଣ୍ଡ ଲଣ୍ଡାକରି—ତାକୁ ରାଜ୍ୟସାକ ବୁଲାଇଥିଲେ—ସେ ରାଜ୍ୟର ପ୍ରଜାପାଳକ ରାଜା ।

ନାକ ସଙ୍ଗେ କନ୍ତୁ ନାକୁଆ କଣ୍ଢେଇର ଏହି ନାମ ସାମ୍ୟ ଦେଖି ଭାବିବାର ଅଛି—ନାକୁଆ କଣ୍ଢେଇର ନାକଟା ନିଶ୍ଚୟ ଲମ୍ବା ହୋଇଥିବ । ଆଉ ସେହି ଲମ୍ବା ନାକଟା ଏକ କୁତ୍ସିତ ପାଶବିକ କାମୁକତାର ଲାଳସାରେ ନିଶ୍ଚୟ ଖୁବ୍ ଉଜ୍ଜ୍ୱଳ ଦିଶୁଥିବ ।

Digitized by srujanika@gmail.com

ମାତ୍ର ଏପରି ମୀମାଂସାର ବି କଷ୍ଟ ହେଉ ନାହିଁ । କାରଣ ମୋ ମାମୁଁଘର ଗାଁରେ ମୋର ନେଖାଯୋଖାରେ ଅଜା ହେବେ ଜଣେ—ମୋ ବୋଉ ତାଙ୍କୁ ଡାକେ—"ନାକୁଆ କା" । ତାଙ୍କର "ନାକ" ବୋଲି କୌଣସି ଅବୟବ ଥିବାର ମୁଁ କେବେ ଲକ୍ଷ୍ୟ କରିନାହିଁ—ଯଦିଓ ସେ ଖନେଇ ଖନେଇ ନାକରେଇ କଥା କହନ୍ତି ।

ତେଲିମାନେ ବ୍ରାହ୍ମଣ କରଣଙ୍କଠାରୁ ବେଶୀ ବୋକା ବୋଲି ସହଜରେ ପ୍ରମାଣ କରିହେବ ନାହିଁ । ମାତ୍ର ସେଇ ଯେଉଁ ତେଲୀ ପ୍ରଖ୍ୟାତ ନାକସିଧା ଯିବେ ବୋଲି ଆଗରେ ତାଳଗଛ ଦେଖି ତା' ଉପରେ ଚଢ଼ି ପୁଣି ଆରପଟକୁ ଓହ୍ଲାଇ ବାଟ ଚାଲିଲେ ବୋଲି କିମ୍ବଦନ୍ତୀ ଶୁଣାଯାଏ—ସେମାନେ ନିଶ୍ଚୟ ନିଃସନ୍ତାନ ଥିଲେ । କାରଣ ଆଉ ଏଭଳି ଗଳ୍ପ ସୃଷ୍ଟି କରିବାକୁ ଖୋରାକ୍ ଯୋଗାଇବା ପାଇଁ ସେମାନଙ୍କର ବଂଶଧରଗଣ ଆଉ ଆଜିକାଲି କୁତ୍ରାପି ଦେଖାଯାନ୍ତି ନାହିଁ । ବରଂ ନାକସିଧା ବାଟ ଚାଲି ଆମ ଗ୍ରାମର ଦୁଇବନ୍ଧୁ ମାଳମଣି ମହାପାତ୍ର ଓ ରାଜକିଶୋର ମହାନ୍ତି, ଗୋଟାଏ ଗୋବରଖାତରେ ପଡ଼ି ହଇରାଣ ହେବା ଦୃଶ୍ୟ ମୁଁ ନିଜେ ମୋ ପିଲାଦିନେ ଦେଖିଛି ।

ମୋ ସାନପୁଅ "ନାକ ଲଗି ନାକେଦମ୍" ବୋଲି ଯେଉଁ ଶିଶୁ କାହାଣୀ କବିତାଟି ବଡ଼ ଉତ୍ସାହରେ ବହୁବେଳେ ଗାଏ—ସେଥିରୁ ଜଣାଯାଏ ଯେ—ଗୋଟିଏ ପିଲା ଥରେ ବଣରେ ବୁଲୁ ବୁଲୁ ଭୋକିଲା ହୋଇ ଅଜଣା ନାଲିଆ ଫଳଟିଏ ଖାଇଦିଅନ୍ତେ ସାଙ୍ଗେ ସାଙ୍ଗେ ତା'ର ନାକଟି ଲତାଭଳି ଲମ୍ବେଇ ମାଡ଼ିଗଲା । ଆଉ କି କାଣ୍ଡ ବା ତା'ପରେ ନ ଘଟିଲା ! ସେ ନାକ ବଣ ପାହାଡ଼ ପର୍ବତ ନଦୀ ନାଳ ସହର ଗାଁ ଡେଇଁ ଚାଲିଲା—ତାହା ବିନ୍ଧ୍ୟଠାରୁ ଉଚ୍ଚ ଓ ହିମାଳୟ ଠାରୁ ଲମ୍ବା ହେଲା । ତାହା ବହୁ ରାସ୍ତାକୁ ଅବରୋଧ କଲା । ଗାଡ଼ି, ମଟର, ସବୁ ଅଟକିଲେ— ନଳକୂଅରେ ପାଣିସୁଅ ଆଉ ଚାଲିଲା ନାହିଁ । ମେଘ ଓ ପବନକୁ ବି ସେ ନାକ ଅଟକାଇଦେଲା । ଚାରିଆଡ଼େ ଏ ଯେମିତି ମହା ହଇଚଇ ସୃଷ୍ଟି ହୋଇଗଲା, ଆତଙ୍କ ଖେଳିଗଲା । ହିନ୍ଦୁମାନେ ଡାକ ଛାଡ଼ିଲେ—ତ୍ରାହି ମଧୁସୂଦନ—ବମ୍ ବମ୍ ଭୋଳାନାଥ । ମୁସଲମାନମାନେ ଡକା ପାରିଲେ—"ଆଲ୍ଲାହୋ ଆକ୍‌ବର" । ଖ୍ରୀଷ୍ଟିଆନମାନେ କାନ୍ଦିଉଠିଲେ—"ଆମେନ୍ ଆମେନ୍" । ତା'ପରେ ଈଶ୍ୱର ବନାମ ଆଲ୍ଲା, ବନାମ ଗଡ୍ କରୁଣାବରାଳୟ

Digitized by srujanika@gmail.com

ହୋଇ ସ୍ୱର୍ଗରୁ ଅପ୍‌ସରାଟିଏ ପଠାଇଦେଲେ । ସେ ନାଚ ନାଚ ଝଳା ଫଳଟିଏ ନାକୁଆକୁ ଖୋଇଦିଅନ୍ତେ ତାର ନାକ ପୁଣି ଯଥାକାର ଧାରଣ କଲା ।

ଏ ଶିଶୁ ମନଭୁଲା ଗପର ଅବଶ୍ୟ ବିଶେଷ କିଛି ଅର୍ଥଦ୍ୟୋତନା ନାହିଁ । ତେବେ ବେଳେ ବେଳେ ଗୋଟିଏ କଥା ମୋ ମନକୁ ଆସେ । ଆହା, ସେହି ନାଲିଆ ଫଳଟି ମୋ ହାତରେ ପଡ଼ନ୍ତା କିମ୍ବା କେହି ଯଦି ଉଦ୍ଭିଦ ବିଜ୍ଞାନବିତ୍ ଅଧ୍ୟାପକ ସେ ଫଳଟିକୁ ପୁନଶ୍ଚ ଜଙ୍ଗଲରୁ ଆବିଷ୍କାର କରନ୍ତେ—ତେବେ ପ୍ରଥମେ ଉପଯୁକ୍ତ ଅନୁପାନ ଓ ମାତ୍ରା ପ୍ରୟୋଗ କରି ମୁଁ ମୋର ପ୍ରାଣାଧିକା ପତ୍ନୀଙ୍କର ପତିତ ନାକଟିକୁ ଯଥା ମାନ୍ୟ ଦେଇ ଉଦ୍ଧାର କରିପାରନ୍ତି ।

ସାହିତ୍ୟିକ, ସାମାଜିକ ଓ ରାଜନୈତିକ ବ୍ୟବସ୍ଥାରେ 'ନାକ'ର ପ୍ରତିଷ୍ଠା ଖୁବ୍ କମ୍ ନୁହେଁ । ଆଗେ ସୁଇଡ଼େନ୍‌ରେ ମୁଣ୍ଡପିଛା କର ନ ବସି ନାକପିଛା କର ବସୁଥିଲା । ଚୋରମାନଙ୍କୁ ନାକବାଳ ଧରି ଉଠ୍ ବସ୍ କରାଇ ଦଣ୍ଡ ଦେଉଥିଲେ—ଆଗେ ମରହଟ୍ଟୀ ମାଟିବଂଶ ଅବଧାନମାନେ । ଆଚ୍ଛା ! କିଏ ଭଲା ଜାଣିଥିଲା ଯେ, ରାଜା ସୁଲେମାନଙ୍କର ପ୍ରିୟତମା ରାଣୀ ଶେବାଲିନଙ୍କର ସୁନ୍ଦର, ଉନ୍ନତ, କୋମଳ ଓ କୁଞ୍ଚିତ ନାସିକାଟି ସାମ୍ରାଜ୍ୟର ଆଇନ୍‌କୁ ମଧ୍ୟ ବଦଳାଇ ଦେଇପାରେ ? ସମାଜତତ୍ତ୍ୱବିତ୍‌ମାନେ କହନ୍ତି—ଚେପେଟା ନାକମାନେ ସାମାଜିକ ଭାବେ ନିମ୍ନସ୍ତରର । ନେପୋଲିଅନ୍ ଲମ୍ବାନାକା ଦେଖି ଅଫିସର ନିଯୁକ୍ତି ଦେଇଥିଲେ । ମାତ୍ର ନାକ ଚେପ୍‌ଟା ହେବା ଯୋଗୁ ସେ "ବୁଦ୍ଧି" ସ୍ଥାନ ନ ପାଇ ଗୁଡ଼ ଗୁଳିଯିବ—ଏ କଥା ଆଜି ବିଶ୍ୱାସ କରିବା କଠିଣ ।

ଗୋଗଲ୍‌ଙ୍କର ସେହି ବିଖ୍ୟାତ ଗଳ୍ପରେ ମେଜର୍ କୋଭାଲିୟୁଭଙ୍କ ଚିକ୍କଣ ପିଠାପରି ସମତଳ ନାକ କେମିତି ପାଉଁରୁଟିରେ ପରିଣତ ହୋଇଗଲା—ତାହା ବଡ଼ ଶୋଚନୀୟ । ପାସ୍କେଲ୍‌ଙ୍କର ସେହି ବିଖ୍ୟାତ ଉକ୍ତି ମନେପକାନ୍ତୁ—କ୍ଳିଓପାଟ୍ରାଙ୍କର ନାକଟି ଯଦି ଚେପ୍‌ଟା ହୋଇଥାନ୍ତା—ପୃଥିବୀର ମୁଖମଣ୍ଡଳ ବି ହୋଇଥାନ୍ତା ଅନ୍ୟ ପ୍ରକାର ।

ଅବଶ୍ୟ ଜନ୍‌ବ୍ରିଫି ତାଙ୍କର "ଦି ହ୍ୟୁମାନ ଫେସ୍" ଗ୍ରନ୍ଥରେ ନାକ ଉପରେ ଉଚ୍ଚମତ ପ୍ରକାଶ କରିନାହାନ୍ତି । ସେ କହନ୍ତି—"ନିଷ୍ଠୁର ଦର୍ଶକ ଓ ଶତ୍ରୁସ୍ଥାନୀୟ ନିନ୍ଦୁକମାନଙ୍କର ଜିହ୍ୱାକଣ୍ଡୁ ମେଣ୍ଟାଇବା ଲାଗି ଭଗବାନ 'ନାକ'

Digitized by srujanika@gmail.com

ନାମକ ଅବୟବଟି ସୃଷ୍ଟି କରିଛନ୍ତି ।" ସର୍କସ୍‌ର ହାସ୍ୟଅଭିନେତାମାନେ ସାଧାରଣତଃ ଲମ୍ବାନାକା, ଅଙ୍କୁଶାନାକା ବା ଷଣ୍ଢାନାକା ହୋଇଥାନ୍ତି । ଧଳା-ରଙ୍ଗର ଚେପେଟାନାକ ତ କ୍ଲାଉନ୍‌ମାନଙ୍କର । ସେକ୍‌ସପିଅରଙ୍କ ବିଖ୍ୟାତ ଚରିତ୍ର ଫିଲ୍‌ଷ୍ଟାଫ୍‌ଙ୍କର ବିଖ୍ୟାତ 'ନାସିକାଟିର କଥା' ଆପଣଙ୍କର ମନେଥିବ । ତାଙ୍କର ସେଇ ନାକଟା ତାଙ୍କର ମୃତ୍ୟୁକାଳରେ କେମିତି କମଳାର ନିଆଁଭଳି ମୁନିଆଁ ହୋ'ଇ ନ ଗଲା ! ସେମିତି ବାର୍ଡ଼ଡ୍ରୋଫଲ୍‌ଙ୍କ ନାକଟା ବି ହୋଇଯାଇଥିଲା— ଗୋଟିଏ ରଡ଼ନିଆଁ ଅଙ୍ଗାରଭଳି । "ଛମାଣ ଆଠଗୁଣ୍ଠ"ର ନାୟକ ରାମଚନ୍ଦ୍ର ମଙ୍ଗରାଜଙ୍କର ସେତାନୀ ନାକକୁ ଜେଲ ଭିତରେ ଯେମିତି ଭଗିଆତନ୍ତୀ ଉନ୍ମତ୍ତ ପ୍ରତିହିଂସାରେ କାମୁଡ଼ି ଛିଣ୍ଡାଇଦେଲା—ତାହା ଯେମିତି ହିଂସ୍ର—ସେମିତି କରୁଣ ମଧ୍ୟ ।

କିନ୍ତୁ କବିମାନଙ୍କ ଦୃଷ୍ଟିରେ ନାକର ସୌନ୍ଦର୍ଯ୍ୟ ଅପରୂପ ମର୍ଯ୍ୟାଦା ଲଭି କରିଛି । ପୁରୁଷର ନାକ ଅପେକ୍ଷା ନାରୀଙ୍କ ନାକ ଉପରେ କବିମାନଙ୍କର ଦୃଷ୍ଟି ବେଶୀ । କେତେକ ବିଦେଶୀ କବି କହନ୍ତି—ନାରୀମାନଙ୍କ ନାକ ଏପରି ହେବା ଉଚିତ୍ ଯେଉଁଥିରେ କି ପ୍ରକାଶ ପାଉଥିବ ଟିକିଏ ତିରସ୍କାରିଣୀ ଭାବ, ଟିକିଏ ମାନିନୀ ପଣ—ଆଉ ଟିକିଏ ଦୁଷ୍ଟାମି ବା ଫାଜିଲମିର ଇସାରା—ଯାହାର ସୂଚନା ପାଇଲା ମାତ୍ରେଇ ତାକୁ ମୋଡ଼ିଦେବାଲାଗି ମନରେ ପ୍ରଲୋଭନ ଜାଗି-ଉଠିବ । ଟେନିସନ୍ ଚାହୁଁଥିଲେ—ଓଲଟ ଗୋଲାପ ପାଖୁଡ଼ାଟି ଭଳି ନରମ ନାକଟିଏ । କେତେ କବି ଶୁକ ପକ୍ଷୀର ଚଂଚୁ ଭଳି ନାସିକାଟିଏ ପସନ୍ଦ କରନ୍ତି । ତେବେ ମୋଟାମୋଟି କୁଞ୍ଚିତ ଅବନତ ଓ କୋମଳ ନାସିକାଟିଏ ପ୍ରତି ନାରୀର କାମ୍ୟ । 'ସଙ୍ଗ ଅଫ୍ ସଲୋମନ"ର କବି ଏପରି ଏକ ନାସିକା ଖୋଜୁଥିଲେ, ଯାହାକି ଡାମାସ୍କସ୍‌କୁ ଚାହିଁ ରହିଥିବା ଲେବାନନ୍‌ର ଟାଓଆର ଭଳି ହୋଇଥିବ ଉଚିତ । କବିମାନେ ନାନା ବାହୁଲ୍ୟ କରି ନାରୀ ନାକର ବର୍ଣ୍ଣନା କରିଛନ୍ତି । ଜଣେ କହିଲେ—କନ୍ଦର୍ପ ତିଳ ପୁଷ୍ପରେ ଦୁଇଟି ତୂଣୀର ନିର୍ମାଣକରି ତାକୁ ତଳମୁହାଁ କରି ରଖିଛି । ତିନିପୁରକୁ ତିନି ଶରରେ ସାଧନ କରିସାରି ବାକିଶର ଦୁଇଟିକୁ ସେ ରଖିଛି ସେହି ତୂଣୀର ଦୁଇଟିରେ । ନାୟିକାର ଉଚ୍ଛ୍ୱାସିତ ନିଃଶ୍ୱାସବାୟୁରୁ ଏହାହିଁ ନିଶ୍ଚିନ୍ତ ଭାବେ ଅନୁମିତ ହେଉଛି ଯେ, ତାର ନାସା ତୂଣୀରରେ କନ୍ଦର୍ପର ଦୁଇଟି ଫୁଲଶର ଲୁକ୍କାୟିତ ରହିଅଛି । ଜଣେ କବି କହିଲେ—

Digitized by srujanika@gmail.com

କେଶ ତିଳସ୍ୟ କୁସୁମଂ
ଶୁକ ଚଞ୍ଚୁ ମନେ୍ୟ
ନାସା ବଦନ୍ତ କଥୟାମ୍ୟହ ମନ୍ୟଦେବ
ସଂରକ୍ଷିତୋ ନିଜ ଶରାସନ ସନ୍ନିଧାନେ
କାଟମନ କେତେକଦଳେ
ଜମସ୍ତୋ ନିଷଙ୍ଗଃ ।

ଭଞ୍ଜ, ଅଭିମନ୍ୟୁ ଆଦି ଉତ୍କଳୀୟ କବିଗଣ ପ୍ରାୟ ହିଁ ତିଳ ପୁଷ୍ପଜିଣା ନାସିକାର ସ୍ତୁତିଗାନ କରିଛନ୍ତି । ତେବେ ନିଦ୍ରାଭିଭୂତା ନାୟିକାର "ନୀଳା-ନାକଚଣା—ସମନ୍ୱିତା, ଶ୍ୱାସେ ପ୍ରଫୁଲ୍ଲିତା ଘୋଣା" ଉପରେ ଅଭିମନ୍ୟୁଙ୍କର ଦୃଷ୍ଟି ବେଶ ଲୋଭାତୁର । ବିପରୀତ ବିହାରରେ ନାୟିକାର—ଅନ୍ୟାନ୍ୟ ଅଙ୍ଗର ସଂଚାଳନ ସଙ୍ଗେ, ତିଳପୁଷ୍ପଜିତ ନାସାପୃଷ୍ଠରେ ବସଣୀ ହାଲିବାର ମନୋରମ ଦୃଶ୍ୟ ଦେଖିଲେଇ ଭଞ୍ଜଙ୍କ ନାୟକର କାମାବେଗ ଅଧିକ ପ୍ରଖର ହୋଇଉଠେ । ଦୀନକୃଷ୍ଣ ସେହି ନାୟିକାର ସ୍ୱପ୍ନ ଦେଖିନ୍ତି—ଯେ କି—"ଜଣିଆଇଁ ଗୁହୁଁଥିବ ନାସିକା ଫୁଲାଇ—କହୁଥିବ ବନବାଣୀ ଅଳପ ଗେଲାଇ ।"

କବିମାନେ କେବଳ ନାରୀମାନଙ୍କର ନାକ ଉପରେ ବିଶେଷ ପକ୍ଷପାତିତ୍ୱ ଦେଖାଇବାର ମୁଖ୍ୟ କାରଣ ହେଉଛି—ନାରୀମାନେ ମଧ୍ୟ ନାକ ବିଷୟରେ କମ୍ ସଚେତନ ନୁହନ୍ତି ! ମଧ୍ୟ ଯୁଗରେ ନାରୀମାନେ ନାକ ଫୋଡ଼ୁଥିଲେ, ତହିଁରେ ବହୁ ପ୍ରକାର ଅଳଙ୍କାର ଲଗାଇବା ପାଇଁ । ମାତ୍ର ଏବେ ନାକରେ ଅଳଙ୍କାର ଲଗାଇବା ଲାଗି ନାକ ଫୋଡ଼ିବାର ବିଶେଷ ଆବଶ୍ୟକତା ନାହିଁ । ଟିପା ଅଳଙ୍କାରର ଆବିଷ୍କାର ସେ ଯନ୍ତ୍ରଣାରୁ ମୁକ୍ତି ଦେଇଛି । ଫୁଲକଗାଲି ଗୋଲ-ମୁହଁର ନାକ ଉପରେ ଡିମ୍ବାକୃତି ଅଳଙ୍କାରଟିଏ ବେଶ୍ ମାନେ । "ବେଶୋରି" ବି ଭଲ ଦିଶେ । ଠିକ୍ ଏ ଲମ୍ବାମୁହଁର ନାକରେ ପାତଳ ଚେପେଟା ଅଳଙ୍କାରଟିଏ ବେଶ୍ ଫେନାଏ । ବହୁ ସତୀ ରମଣୀ ସ୍ୱାମୀଦେବତାଙ୍କ ଶ୍ରୀନାମର ଆଦ୍ୟ ଅକ୍ଷରଟିକୁ ଅଳଙ୍କାର କରି ନାକରେ ପିନ୍ଧନ୍ତି । "ଟିକ୍‌ଠ ବର୍ତ୍ତୁଳ ଚନ୍ଦ୍ରାନନା" ମାନଙ୍କର ନାକତଳେ ସ୍ୱଳ୍ପ ଦୋଳାୟମାନ କ୍ଷୁଦ୍ର ନୋଲକ ଅଳଙ୍କାରଟି, ରସିକ ଯୁବାପୁରୁଷର ଧୈର୍ଯ୍ୟବନ୍ଧକୁ ଭାଙ୍ଗିଦେବ ବୋଲି ଧମକ

Digitized by srujanika@gmail.com

ଦେଇଥାଏ । ସବୁ ପ୍ରକାର ମୁହଁରେ ନାକର ସୌନ୍ଦର୍ଯ୍ୟକୁ ସ୍ଵ ରୂପ ଶୋଭା ପାଇଥାଏ ନୋଥ ନାମକ ଅଳଙ୍କାରଟିଏ । ନାକରେ ନୋଥକୁ ଦେଖି ଅଭିମନ୍ୟୁ ତର୍କଣା କରନ୍ତି—ଯୁବ ପୁରୁଷର ଦୃଷ୍ଟି ରୂପକ ମୃଗକୁ ଧରିବାଲାଗି—ନୋଥ ରୂପକ ଜାଲଟିଏ ନାକପାଖେ ମେଲି କନ୍ଦର୍ପ ଲୁଚିବସିଛି କି ?

ପୁରୁଷମାନଙ୍କର ନାକ ଉପରେ ପଣ୍ଡିତମାନେ କହନ୍ତି ଯେ—ପୁରୁଷର ଅର୍ଦ୍ଧେକ ବ୍ୟକ୍ତିତ୍ଵ ପ୍ରକାଶିତ ହୋଇଥାଏ, ତାର "ନାକ" ଉପରେ । ଗରୁଡ଼ନାକା ପୁରୁଷ ବ୍ୟକ୍ତିତ୍ଵ ସଂପନ୍ନ, ଉଦାର, ପୌରୁଷବନ୍ତ, ପଣ୍ଡିତ, ବିନୟୀ ଓ କର୍ତ୍ତବ୍ୟପରାୟଣ ହୋଇଥାଏ ବୋଲି ଶାସ୍ତ୍ରରେ କଥିତ ଅଛି । ଶୁଆ ନାକଆ ପୁରୁଷ ପଣ୍ଡିତ, ଧୀର, ବୁଦ୍ଧିମାନ ଓ ସୁଭାଷିତ । ହାଣ୍ଡିନାକା ପୁରୁଷ ରସଜ୍ଞ, ପଣ୍ଡିତ, ଉଦାର, ଧନବନ୍ତ, କ୍ଷିପ୍ର, ମନୁଆଁ, ବଳଶାଳୀ ଓ ନେତୃତ୍ଵ ଶକ୍ତିସଂପନ୍ନ । ଚଣ୍ଡାନାକଆ ପୁରୁଷ—ଅବିନୟୀ, ହିଂସ୍ର, ଈର୍ଷା-ପରାୟଣ, ମୂର୍ଖ ଓ କୁପଥଗାମୀ ହୁଅନ୍ତି । । ଖଣ୍ଡାନାକାମାନେ ରସିକ, ସରଳ, ସ୍ପଷ୍ଟବାଦୀ ନିର୍ଭୀକ ଓ ବୁଦ୍ଧିମାନ ଏବଂ ପେଚାନାକା ପୁରୁଷ ସାଧାରଣତଃ ଚତୁର, ଧନଲୋଭୀ, ଜ୍ଞାନବନ୍ତ ଓ ହିଂସ୍ର ହୁଅନ୍ତି ।

ଏତେ କଥା ପରେ ମଧ୍ୟ ନାକ ଅନ୍ୟାନ୍ୟ ଅଙ୍ଗଭଳି ବହୁ ଦୁରାରୋଗ୍ୟ ବ୍ୟାଧିର ଆଗାର ହୋଇଥାଏ । ତେବେ ମେଡ଼ିକାଲ୍‌ରେ ନାକଲାଗି ସ୍ଵତନ୍ତ୍ର ବିଭାଗ ବ୍ୟବସ୍ଥା ନାହିଁ । ନାକ ଭିତରେ ପିନସିନ—ବେମାରି ହେଉ ବା ସାଇନୋସାଇଟିସ୍ ହେଉ ବା ପିଲମାନେ ନାକ ଭିତରେ କାଇଁଚ, ପାନ ନାଡ଼, ମୁଗ, ବୁଟ, କମଳାମଞ୍ଜି, ଗୋଡ଼ି ଆଦି ଭର୍ତ୍ତିକରି ବାପା ମାଆଙ୍କୁ ଯେତେ ହଇରାଣ ପରିଛି କରନ୍ତୁ—ଆପଣଙ୍କୁ ନାକ ଦେଖାଇବାପାଇଁ ଇ.ଏନ୍.ଟି ବିଭାଗକୁ ଇ ଯିବାକୁ ପଡ଼ିବ । କାରଣ ଆଖି, ନାକ ଓ ଗଳା ପରସ୍ପର ସଙ୍ଗେ ଅଙ୍ଗାଙ୍ଗୀ ସଂପୃକ୍ତ । ପେଟ ଭିତରେ ଗାଷ୍ଟ୍ରାଇଟିସ୍ କ୍ଷତ ହୋଇଛି କି ନାହିଁ ତାହା ଜାଣିବା ଲାଗି ମଧ୍ୟ ଡାକ୍ତର ଆପଣଙ୍କ ନାକରେ ରବରନଳୀ ପୂରାଇ ତଣ୍ଟିବାଟେ ପେଟ ଭିତରୁ ଅମ୍ଳରସ କାଢ଼ିବେ, ଏହାଛଡ଼ା କୁଆଡ଼େ ଏବେ ମଧ୍ୟ ବିଶିଷ୍ଟ ଉପାୟ ଆବିଷ୍କୃତ ହୋଇନାହିଁ । ଅଜୀର୍ଣ୍ଣରୋଗୀ ଓ ମଦୁଆଙ୍କ ନାକ କୁଆଡ଼େ ସର୍ବଦା ଲାଲ୍ । କାମଳ ରୋଗୀର ନାକ କୁଆଡ଼େ ଅତି କୁତ୍ସିତଭାବେ ହଳଦିଆ ଦିଶେ ।

Digitized by srujanika@gmail.com

ଏବେ ନାକର ଭୋଗ କଥା ଶୁଣନ୍ତୁ । ନାକ ଦ୍ୱାରା କ'ଣ ସବୁ ଭୋଗ କରାଯାଇ ପାରେ, ଦେଖନ୍ତୁ । ଫୁଟନ୍ତା ଗୋଲାପର ମଧୁର ସୌରଭ—ଫେନଚୂଡ଼ ରକ୍ତିମ ମଦ୍ୟର ମଦବାକୁଳ ଗନ୍ଧ—ସିଗାରେଟ୍‌ର ଖୁସ୍‌ବୁ—ଫେନାୟିତ କଫିର ପ୍ରଲୋଭୀ ଘ୍ରାଣ—ଚୁଙ୍ଗୁଡ଼ି କଟ୍‌ଲେଟ୍‌ର କ୍ଷୁଧା ଉଦ୍ରେକକାରୀ ବାସ୍ନା—ବଡ଼ ଶୁଖୁଆ ପୋଡ଼ାର ପଖାଳ—ଆମନ୍ତ୍ରଣକାରୀ ଉତ୍କଟ ଗନ୍ଧ—ନୂଆଖୁଡ଼ଙ୍କର ଚର୍କୋରୀ ହୁଙ୍କା—ଶଳାଭାଉଜର କବରୀ ଶୋଭୀ ମଲ୍ଲୀ ବଉଳର ମାଳା—ଚହନା, ମଲ୍ଲୀ, ରଜନୀଗନ୍ଧା, କାମିନୀ ଫୁଲଙ୍କର ଉଚାଟକାରୀ ବାସ୍ନା—ଲକ୍ଷ୍ମୀନାରାୟଣ ମନ୍ଦିରର ଧୂପ—ମେରୀ ଗୁଜ୍ରାଟ ନର୍ସର ଡେଟଲ୍ ସିଣ୍ଟ୍ ନଟୋ ଆଦି ସଂପୃକ୍ତ ଦେହର ପରିଚ୍ଛନ୍ନ ବାସ୍ନା—ଟିକିପୁଅର ଲାଳୁଆ ପାକୁଆ ପାଟିରୁ ନିର୍ଗତ ସ୍ତନ୍ୟଦୁଧର ଖଟାଳିଆ ସରଳ ଗନ୍ଧ—ବାପାଙ୍କର ଚନ୍ଦନଚର୍ଚ୍ଚିତ ଶୁଭ—ଲଳିତା ଦାସ ବାବାଜୀଙ୍କର ଚୂଆ, ଚନ୍ଦନ, କର୍ପୂର ମିଶା ଶ୍ରୀଅଙ୍ଗ ସୌରଭ—ଆଷାଢ଼ର ପହିଲ ଅସାରରେ ରଜସ୍ୱଳା ଭିଜା ମାଟିର ଉନ୍ମତ୍ତକାରୀ ଜୈବିକ ଘ୍ରାଣ—ଅଶିଣ ମାସର ଧାନଫୁଲ ଫୁଟା ଧାନକ୍ଷେତର ସବୁଜଶ୍ରୀ ସୌରଭ—ଶୀତ ଦିନର ଗୋଧୂଳିରେ ମୁଗ, କୋଳଥ କିଆରୀର ଶୀତୁଆ ବାସ୍ନା—ଆଉ ଏମିତି କେତେ ଯେ ଭୋଗ୍ୟ ବ୍ୟାପାର ଆମ ଏଇ ନାକ ଦ୍ୱାରା ହିଁ ଉପଭୋଗ କରିପାରୁ—ତାହା କହି ଶେଷ କରିହେବ ନାହିଁ ।

"ନାକ" ଉପରେ ଏତେ ବାଗ୍ମିତା କରି ନାକେଦମ୍ ହୋଇ "ଆସନ୍ତାକାଲି"ର ସଂପାଦକ ମହାଶୟଙ୍କୁ ମନେ ମନେ ଅଭିଶାପ ଦେଉଥିଲି—"ପ୍ରଭୁ ! ଭଦ୍ରଲୋକଙ୍କୁ ଆସନ୍ତା ଜନ୍ମରେ ଲେଖକଟିଏ କରି ଜନ୍ମ ଦିଅ······" ଏହି ସମୟରେ ମୋର ପାନ ସାଙ୍ଗ ଶ୍ରୀମାନ୍ ପିତବାସ ଢୁମେଇ ଢୁମେଇ ଆସି ବସିଲେ ଓ "ନାକ" ଉପରେ ଏଇ ଲେଖାଟି ଉପରେ ଗୋଟିଏ ଚଞ୍ଚଳ ଦୃଷ୍ଟି ନିକ୍ଷେପ କରିସାରି ଅବହେଳାରେ ହାଇ ମାରିଲେ । ମୁଁ ସନ୍ତ୍ରସ୍ତ ହୋଇ ପଚାରିଲି—କହୋ କଥା କ'ଣ ? ଦିନରେ ଏମିତି ଢୁମଉଛ ଯେ ?

ଆଉ ରାତିରେ ଶୋଇ ହେଉନାହିଁ ।

Digitized by srujanika@gmail.com

କପାଇଁ ?

ଆପଣଙ୍କ ଶ୍ୟାଳକ। ରହନ୍ତି ଶୁଆଇଦେଲେ ମ ହୁଏ !!

ହେଲା—ଏବେ— । ତଥାପି ଗାଡ଼ିରେ ଶୋଇବାଲାଗି ବହୁ ସମୟ ବଳୁଥିଲା ଆମବେଳେ ?

ନା—ଗାଡ଼ି ଆଉ ବଳୁଛି କୋଉଠି ? ଗାଡ଼ିଯାକ ଗ୍ଭଲିଛି । କଣ ଗ୍ଭଲିଛି ? କଣ ଆଉ ଗ୍ଭଲନ୍ତା ? ଆପଣଙ୍କ ଶ୍ୟାଳକା ଶ୍ରୀମନ୍ତଟି ଗାଡ଼ିରେ ଏତେ ଚମତ୍କାର ଘୁଙ୍ଗୁଡ଼ି ମାରୁଛନ୍ତି ଯେ—ତା'ର ମଧୁର ବାଣୀବନ୍ଦୀ ସଙ୍ଗୀତ ଶୁଣିବା ଲାଗି ବହୁ ଲୋକ ମୋ ଘରର କାନ୍ଥ କଡ଼ରେ କାନପାତି ନାକେଇ ରହୁଛନ୍ତି । କହନ୍ତୁ ନା—ଏଥିରେ ଆଉ ନିନ୍ଦା ହେବା କଥା ?

ମୁଁ କହିଲି—ଓ ବୁଝିଲି—ବୁଝିଲି—ତୁମକୁ ତା' ହେଲେ ତା' ସଙ୍ଗେ ରାତିଯାକ ତବଲା ସଙ୍ଗତ କରିବାକୁ ପଡ଼ୁଥିବ ।

ଧନ୍ୟବାଦ ନାକ ! ଆଉ ତତ୍ସ୍ନାଃସୃତ ଏଇ ଘୁଙ୍ଗୁଡ଼ି !!



Digitized by srujanika@gmail.com

# ଧନ୍ୟ କହିବା

ବିଧିବାମନବାବୁ ସେଠାରେ ପହଞ୍ଚିବାବେଳକୁ ସେମାନେ ସମସ୍ତେ ଅପେକ୍ଷା କରିଥିଲେ । ମନ୍ତ୍ରୀଙ୍କ ସଙ୍ଗେ ତାଙ୍କ ଘରେ ଦେଖା କରିବେ । ସକାଳ ସାତଟାଠାରୁ ଏ ଭିଡ଼ ଆରମ୍ଭ ହୋଇଗଲାଣି । ମନ୍ତ୍ରୀ ଘରଭିତରୁ ତାଙ୍କର ନିତ୍ୟକର୍ମ ସାରି ଠିକ୍ ସାଢ଼େ ଆଠଟା ବେଳକୁ ଅପେକ୍ଷାଗାର ଭିତରକୁ ଆସି ଦର୍ଶନ ପ୍ରାର୍ଥୀମାନଙ୍କୁ ହସି ହସି ଦର୍ଶନ ଦେଇ କୃତ୍ୟ କୃତ୍ୟ କରିବେ ଓ ଆପତ୍ତି ଅଭିଯୋଗକାରୀଙ୍କ ଅଭିଯୋଗମାନ ଶୁଣି ତାର ପ୍ରତିବିଧାନ ଦିଗରେ ଚେଷ୍ଟା କରିବେ । ଏତିକ ନ କଲେ ମଧ୍ୟ ମନ୍ତ୍ରୀଙ୍କର ରକ୍ଷାନାହିଁ । ଗଣତନ୍ତ୍ରରେ ଯେଉଁମାନେ ଭୋଟଦେଇ ବିଧାନସଭାକୁ ପଠାଇଛନ୍ତି ସେମାନଙ୍କର ମାନ୍ୟବର ନିର୍ବାଚିତ ପ୍ରତିନିଧିଙ୍କ ଉପରେ ପୂର୍ଣ୍ଣ ଅଧିକାର ଅଛିନା । ହକ୍ ଭୋଟଦେଇଛୁ ଭୋଟ ମଧ୍ୟ କରେଇ ଦେଇଛୁ—ଆମକଥା ନ ଶୁଣି ଯିବେ କୁଆଡ଼େ ? ଅପେକ୍ଷମାଣ ବହୁ ବ୍ୟକ୍ତିଙ୍କର ମନୋଭାବ ପ୍ରାୟ ଏହିପରି । ସେମାନେ ନାନାବିଧ ବ୍ୟବସ୍ଥା ଓ ପ୍ରସ୍ତାବ ନେଇ ହୁଏତ ଆସିଛନ୍ତି । କିଏ ଆସିଛି ତା' ପୁଅ ପୁତୁରାଙ୍କ ଚାକିରି ନେଇ—କିଏ ବା ଆସିଛି ସ୍ଥାନୀୟ କୌଣସି ଅଫିସରଙ୍କର ବଦଳି ଲାଗି ବା ବଦଳି ରହିତ କରିବା ଲାଗି । ଆଉ କେହି କେହି ଆସିଛନ୍ତି କୌଣସି କୌଣସି ସଭାରେ ସମ୍ମାନନୀୟ ମୁଖ୍ୟ ଅତିଥି କରିବାପାଇଁ । ଆଉ କେହି କେହି ଆସିଛନ୍ତି ମନ୍ତ୍ରୀଙ୍କ କାନପାଖେ କ'ଣ ସବୁ ଫୁସ୍ ଫୁସ୍ କରି କହିବେ ବୋଲି । ମନ୍ତ୍ରୀଙ୍କର ସେଥିପ୍ରତି ଆଗ୍ରହ ଥାଉ ବା ନ ଥାଉ । କେତେକ ଆସିଛନ୍ତି ପୁଣି ସର୍ବସାଧାରଣ ବା ଜନତା ଜନାର୍ଦ୍ଦନଙ୍କ ତରଫରୁ କିଛି ଗୋଟାଏ ପେସ୍ କରିବେ । ତା'ଭିତରେ ରାଜଧାନୀର କୌଣସି ଇଉନିଟିର କେତେକ ପିଲା ମଧ୍ୟ ଆସିଛନ୍ତି ସେଇ ଇଉନିଟିରେ ଗଣେଶ ପୂଜା ଉପଲକ୍ଷେ ଲୋକସମ୍ପର୍କ ବିଭାଗ ଦ୍ୱାରା ଗୋଟିଏ ହିନ୍ଦୀ ସିନେମା କରାଇଦେବା ପାଇଁ ମନ୍ତ୍ରୀ ହସ୍ତକ୍ଷେପ କରନ୍ତୁ । କେତେକ ଇଉନିଟ୍‌ରେ ଗଣେଶପୂଜାକୁ ମାଇକ୍ ଉପରେ ପୋଲିସ ନିୟନ୍ତ୍ରଣ ଜାରି କରିଥିବାରୁ ପୋଲିସ ଜୁଲମ ବିରୁଦ୍ଧରେ ଓ ମାଇକ ସଂସ୍କୃତିର ସୁରକ୍ଷା ଦିଗରେ ମନ୍ତ୍ରୀ ମହୋଦୟ କିଛି ହସ୍ତକ୍ଷେପ

Digitized by srujanika@gmail.com

କରନ୍ତୁ—ଏଭଳି ଆପତ୍ତି ନେଇ ମଧ୍ୟ କେତେକ ପିଲା ଆସିଥିଲେ । ତା'ଛଡ଼ା ଆଉରି କେତେକ ଥିଲେ—ଯେଉଁମାନେ ବର୍ଷ ଅଧାରୁ ବଦଳି ହୋଇଯାଇଛନ୍ତି ଏବଂ ତାଙ୍କ ସ୍ତ୍ରୀ ଗର୍ଭବତୀ ଅଛନ୍ତି ବା ବୃଦ୍ଧ ପିତା ପକ୍ଷାଘାତଗ୍ରସ୍ତ ହୋଇ-ପଡ଼ିଛନ୍ତି କିମ୍ବା ପିଲାମାନଙ୍କ ପଢ଼ାପଢ଼ି ଗଲା—ଅତଏବ ମନ୍ତ୍ରୀଙ୍କ କୃପାଦୃଷ୍ଟି ଏଥିପ୍ରତି ପଡ଼ୁ । ଏମାନଙ୍କ ବ୍ୟତୀତ ଆଉ କେତେକ ବ୍ୟକ୍ତି ଆସିଛନ୍ତି, ଯେଉଁମାନେ ହୁଏତ କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ନୁହେଁ, କିନ୍ତୁ ସମସ୍ତଙ୍କୁ ଦେଖାଇବାକୁ ଚାହାନ୍ତି ଯେ ସେମାନେ ମନ୍ତ୍ରୀଙ୍କର ନିଷ୍କାମ ଭକ୍ତ ବା ବନ୍ଧୁସ୍ଥାନୀୟ ବନ୍ଧୁ । ସେମାନେ କେବଳ ସୁବାସିତ ମିଠାକଡ଼ା ପାନ ଖଣ୍ଡିଏ ମନ୍ତ୍ରୀଙ୍କ ହାତକୁ ବଢ଼ାଇ ଦେବେ । ମନ୍ତ୍ରୀ ସେତକ ଗ୍ରହଣ କରି ସ୍ମିତହାସ୍ୟ କରିବେ ଓ ସେମାନେ ମଧ୍ୟ ସେ ସ୍ମିତହାସ୍ୟର ଗୋଟିଏ ମଧୁର ପ୍ରତ୍ୟୁତ୍ତର ଦେବେ—ବାସ୍ ସେତକି—ସେତିକରେ କୃତାର୍ଥ ହେବ ପୃଥିବୀ ।

ଏବଂବିଧ ଲୋକସଂଖ୍ୟା ପ୍ରତିଦିନ ପ୍ରାୟ ଅର୍ଦ୍ଧଶତ ବୋଲି ମନେ-ହେଉଥିଲା । ଏମାନେ ବୁଝନ୍ତି ନାହିଁ ମନ୍ତ୍ରୀଙ୍କ ଉପରେ ବର୍ତ୍ତମାନଠାରୁ ବଡ଼ ବାରଟା ଯାଏ କି କି ବିଶେଷ ଦାୟିତ୍ୱମାନ ଅଛି ବା ସବୁକଥା ବୁଝିବା ଲାଗି କେବଳ ମନ୍ତ୍ରୀ ଦାୟୀ ନୁହନ୍ତି । ସେଥିଲାଗି ଗୋଟାଏ ଲମ୍ବା ଚଉଡ଼ା ଅମଲାତନ୍ତ୍ର ମଧ୍ୟ ରହିଛି । ସମସ୍ତେ ଯଦି ଅନ୍ୟର ସ୍ୱାର୍ଥପ୍ରତି ନିର୍ମମଭାବେ ଆଖିବୁଜି ଦେଇ କେବଳ ନିଜର ସ୍ୱାର୍ଥ, ଖିଆଲ ଦାବୀ ବା ପ୍ରୀତି ଜାହିର କରିବେ, ତେବେ ମନ୍ତ୍ରୀ ବିଚରା କେଉଁଦୂର କେତେଙ୍କୁ ସନ୍ତୁଷ୍ଟ କରିପାରିବେ ? ଆଉ ଗୋଟିଏ କଥା ମନ୍ତ୍ରୀଙ୍କ ସିଦ୍ଧାନ୍ତ ଦ୍ୱାରା ପ୍ରତିଦିନ ଯଦି ଶତକଡ଼ା ପଚିଶ ଜଣ ଲୋକଙ୍କର କିଛି ଉପକାର ହୁଏ—ତେବେ ଅନ୍ୟ ପଂଚସ୍ତରି ଜଣ ତାଙ୍କର ଅପକାର ହେଲା ବୋଲି ଘୋର ଅସନ୍ତୋଷ ପ୍ରକାଶ କରିବେ ଏବଂ ଏ ଶାସନରେ ନ୍ୟାୟ ନାହିଁ, ଏଠି ପ୍ରୀତ୍ୟାପ୍ରୀତି ତୋଷଣ ଚାଲିଛି ବୋଲି ପ୍ରଚାର ଆରମ୍ଭ କରିଦେବେ ଏବଂ ଆହୁରି ଦୁର୍ଭାଗ୍ୟର କଥା ହେଲା—ଉପକୃତ ହୋଇଥିବା ପଚିଶିଜଣ କିନ୍ତୁ ସେଥିପ୍ରତି କୌଣସି ଆନୁଗତ୍ୟ ବା କୃତଜ୍ଞତା ପ୍ରକାଶ ନକରି ଓଲଟି କହିବୁଲିବେ ଯେ ଏତିକ ସହଜରେ ସେମାନେ ପାଇନାହାନ୍ତି । ସେଥିପାଇଁ ସେମାନଙ୍କୁ ବହୁ ଇତ୍ୟାଦି ଇତ୍ୟାଦି କରିବାକୁ ବା ଦେବାକୁ ପଡ଼ିଛି । ଏ ଶାସନ ଆଜ୍ଞା ଏମିତି ଚାଲିଛି······ ।

Digitized by srujanika@gmail.com

ମୋଟ ଉପରେ ମନ୍ତ୍ରୀଙ୍କୁ ଯାଇ ତାଙ୍କ ଘରେ ଦେଖାକରିବାଠାରୁ ବଳି ଦୁର୍ଭାଗ୍ୟ ନଥାଇପାରେ । ବରଂ ସେଠି ସେ ସବୁ ବେଳାରେ ପହଁଚଲେ—ସମଗ୍ର ବ୍ୟାପାରଟି ବଡ଼ ଦୟନୀୟ ବୋଧ ହୁଏ—ଏବଂ ଏ ଅବସ୍ଥାରୁ ମନ୍ତ୍ରୀ, ଜନତା ଓ ଦେଶ କପରି ଉଦ୍ଧାର ପାଇବ ସେହି ଚିନ୍ତାରେ ମନ ଘାରିହୋଇ ଯାଏ ।

ତେବେ ସେଦିନ ମଧ୍ୟ ମନ୍ତ୍ରୀଙ୍କ ବାସଗୃହରେ ସକାଳ ଆଠଟା ପର୍ଯ୍ୟନ୍ତ ଏମିତି ଭିଡ଼ ହୋଇଥିଲା । ଦଧିବାମନବାବୁ ଏତେବଡ଼ ଭିଡ଼ ଦେଖି ଏହାଭିତରେ କେମିତି ମନ୍ତ୍ରୀଙ୍କୁ ଦେଖା କରିବେ ଓ ନିଜର ବକ୍ତବ୍ୟଟି ଜଣାଇବେ ତାହା ସ୍ଥିରକରି ନପାରି ଅପେକ୍ଷାଗାର ଭିତରେ ଗୋଟିଏ ବେଞ୍ଚର କୋଣଅଂଶରେ ନିଜକୁ ଯଥାସମ୍ଭବ ଉପବିଷ୍ଟ କରାଇଲେ । ତା'ପରେ ମନ୍ତ୍ରୀଙ୍କ ଆଗମନ ସେଦିନ ସାମାନ୍ୟ ବିଳମ୍ବ ହୋଇପାରେ ବୋଲି ନିଦାରୁଣ ଖବରଟି ମଧ୍ୟ ଶୁଣିଲେ । ଏତେ ସମୟ, ଏତେ ଲୋକଙ୍କ ଭିଡ଼ ଓ ହୋହା ମଧ୍ୟରେ କପରି କଟେଇବେ ତାହା ସ୍ଥିରକରି ନପାରି ଦଧିବାମନ ବାବୁ ଆଖିବୁଜିଲେ ଏବଂ ରାମନାମ ଜପକଲେ ମନେ ମନେ । ସମୟ କଟିଯିବ ଓ ରାମନାମ ଜନିତ କିଞ୍ଚିତ ପୁଣ୍ୟ ଓ ଶାନ୍ତି ମଧ୍ୟ ଲାଭ ହୋଇଯିବ । ମାତ୍ର ଏକାଗ୍ରତା ଆସିଲା ନାହିଁ । ଏହି ବହୁମତ, ଓ ବହୁପଥ ଓ ବହୁସ୍ୱାର୍ଥ ସମ୍ବଳିତ ଜନତା ନାନାଦି ବିଷୟରେ କଥାବାର୍ତ୍ତା ହୋଇ ଚାଲିଥାନ୍ତି । ମଝିରେ ମଝିରେ କେହି ମଧ୍ୟ ଉତ୍ତ୍ୟକ୍ତ ହୋଇଉଠୁଥାନ୍ତି କୌଣସି ଗୋଟିଏ କଥା ଉପରେ । ଦଧିବାମନ ବାବୁଙ୍କ କାନରେ ବିଭିନ୍ନ କୋଳାହଳ ବାଜୁଥାଏ ଏବଂ ହଠାତ୍ ସବୁ କୋଳାହଳକୁ ଅତିକ୍ରମ କରି ଗୋଟିଏ ଉଚ୍ଚସ୍ୱର ତାଙ୍କର ଶ୍ରୁତିପଥାରୂଢ଼ ହେଲା । କେହିଜଣେ କହିଚାଲିଥାନ୍ତି—

ଏସବୁ ପୋଲିସବାଲା ଚୋର—ଡାକ୍ତରଗୁଡ଼ାକ ଡକାଏତ, ଇଞ୍ଜିନିଅର-ମାନେ ସଇତାନ—ଆଇ. ଏ. ଏସ. ଅଫିସରମାନେ ଡାକୁ—ବ୍ୟବସାୟୀଗୁଡ଼ାକ ପାପାତ୍ମା—ମାଷ୍ଟ୍ର, ପ୍ରଫେସରଗୁଡ଼ାକ ପାଜି ବଦମାସ ଇତ୍ୟାଦି ।

ଦଧିବାମନବାବୁ ଯଥାଶକ୍ତି ରାମନାମକୁ ହୃଦୟରେ ଧାରଣକରି ଏକାଗ୍ର ଚିତ୍ତରେ ଜପ କରିବା ପାଇଁ ଯେତେ ଚେଷ୍ଟାକଲେ ବି ଏହିସବୁ ଭର୍ତ୍ସନାମାନ ତାଙ୍କ ମନରେ କୌଣସି ସ୍ଥିରତା ଆଣିପାରିଲା ନାହିଁ । ଯାହାବା ସେ ନିଜକୁ

Digitized by srujanika@gmail.com

କଳିକାଳ ରାମନାମ ଜପକର ଥାନ୍ତେ ଶେଷୋକ୍ତ ଭର୍ତ୍ସନାଟି ତାଙ୍କ ଆତ୍ମାକୁ ବାଧିଗଲା । ଭଦ୍ରଲୋକ ଆଉ ସମସ୍ତଙ୍କୁ ଚୋର ଡକାଏତ ପାପାତ୍ମା ବୋଲି ଗାଳି ଦେଉଥିଲାବେଳେ ସେ ସହିଯାଉଥିଲେ—ମାତ୍ର ମାଷ୍ଟ୍ର ପ୍ରଫେସରଗୁଡ଼ାକ ପାଜି ବଦମାସ ବୋଲି ଶୁଣିଲା ମାତ୍ରେ ସେ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କର ଆଖି ଖୋଲିଗଲା । ତୁଣ୍ଡରୁ 'ରାମ' ଶବ୍ଦ ଉଭେଇଗଲା । ସେ ନିଜେ ଜଣେ କୃତବିଦ୍ୟ ସ୍ୱନାମଧନ୍ୟ ଶିକ୍ଷକ ରାଷ୍ଟ୍ରପତି ପୁରସ୍କାର ଲାଭ କରିଛନ୍ତି । ଏବେ ଅବଶ୍ୟ ଅବସର ନେଲେଣି । ଆପଣା ନେତୃତ୍ୱରେ ରାଜଧାନୀର ଉପକଣ୍ଠରେ ଆଧ୍ୟାତ୍ମିକ ଭାବଧାରା ଉପରେ ଭିତ୍ତିକରି ଗୋଟିଏ ନୂତନ ଧରଣର ବିଦ୍ୟାଳୟ ଖୋଲି ସେଥିରେ ଅବୈତନିକ ଶିକ୍ଷକତା କରୁଛନ୍ତି । ତେଣୁ ଶିକ୍ଷକଜାତି ଉପରେ ଭର୍ତ୍ସନା ଶୁଣି ସେ କିଞ୍ଚିତ ରୁଷ୍ଟ ଓ ଉତ୍ତ୍ୟକ୍ତ ହୋଇ ଆଖିଖୋଲି ଭର୍ତ୍ସନାକାରୀ ବ୍ୟକ୍ତିଟିକୁ ଚାହିଁଲେ । ଦେଖିଲେ ଲୋକଟିର ବୟସ ପଚାଶରୁ କମ୍ ହେବନାହିଁ । ସାମାନ୍ୟ ପାଚିଲା । ଦାନ୍ତ କେଇଟି ପଡ଼ିଗଲେଣି । ଚଷମା ପରିହିତ ।

ଦାବାମନବାବୁ ଗମ୍ଭୀର ହୋଇ ପଚାରିଲେ—କ୍ଷମା କରନ୍ତୁ ଆଜ୍ଞା! କାହିଁକି ଆପଣ ଏତେ ଲୋକଙ୍କୁ ଗାଳି ଦେଉଛନ୍ତି ? ସମସ୍ତେ ମିଶି ଆପଣଙ୍କର କି ନିଦାରୁଣ କ୍ଷତି କରିଛନ୍ତି ?

ଭଦ୍ରଲୋକଟି ଖେଙ୍କିଉଠିଲେ । କାହିଁକି ? ଆପଣଙ୍କୁ ବାଧିଯାଉଛି କାହିଁକି ? ମୋର କଣ କ୍ଷତି ଆଉ ନ କରିଛନ୍ତି ସେମାନେ ? ଝିଅଟା କଲେଜକୁ ଯାଉ ଯାଉ ଗୋଟାଏ ଅଜାତିଆ ଟୋକା ସଙ୍ଗେ କୁଆଡ଼େ ପଳେଇଗଲା—ଏ ପୁଲିସିବାଲା କିଛି କଲେ ନାହିଁ । ଓଲଟି କହିଲେ—ଭଲ ମାଛ ପାଇଛ ଆଣି ଖାନା-ପିନା ଦିଅ ନଡ଼ସା । ସମୁଦ୍ଧ ଘର ମିଳିଲେ । ଏଣେ ବଡ଼ପୁଅଟା କଲେଜରେ ଗୋଟାଏ ଝିଅକୁ କଣ ଟିକିଏ ଥଟ୍ଟା ତାମସା କରିଦେଲା ଯେ ତାକୁ ପୋଲିସି ନେଇ ହାଜତରେ ପୂରେଇ ଦେଲେଣି । ଏ ପୋଲିସବାଲା ଚୋର ନୁହନ୍ତି ? ଆଉ ମାଷ୍ଟରଙ୍କ କଥା କଣ କହିବି ? ଯଦି ସ୍କୁଲ କଲେଜରେ ଏ ମାଷ୍ଟ୍ର ଅଧ୍ୟାପକମାନେ ପାଠ ପଢ଼ାଉଥାନ୍ତେ—ପିଲାଙ୍କ ଉପରେ ଦୃଷ୍ଟି ରଖୁଥାନ୍ତେ, ଏ ପିଲାମାନେ ଏମିତି ହୁଅନ୍ତେ ? ଆଉ, ଡାକ୍ତରଙ୍କ କଥା ଶୁଣିବେ ? ଏଇ ଗତମାସ ତଳେ ଆଜ୍ଞା ଡାକ୍ତର ମୋ ସ୍ତ୍ରୀକୁ ପରୀକ୍ଷା କରି କହିଲେ—କିଛି ଚିନ୍ତା ନାହିଁ । ପିଲାଟା

Digitized by srujanika@gmail.com

ଭଳିରେ ବାହାର ଆସିବ । ଆଜ୍ଞା । ଦେଖୁ ଦେଖୁ ଦୁଇଟା ଜାଆଁଳା ପିଲା ଜନ୍ମ ହେଲେ । ଏ କ ଡାକ୍ତର ହୋଇଛନ୍ତି ?

ଦଧିବାମନ ବାବୁ ହସିବେ କି ରାଗିବେ କିଛି ଠିକ୍ କରି ନ ପାରି କହିଲେ···ଆପଣଙ୍କ ସ୍ତ୍ରୀଙ୍କର ଏବେବି ପିଲା ହେଉଛି ? ତା' ପୁଣି ଜାଆଁଳା ? କେତୋଟି ପିଲା ଆପଣଙ୍କର ?

ଭଦ୍ରଲୋକ ଟିକିଏ ଲଜ୍ଜା ଓ ଟିକିଏ ଗର୍ବମିଶା କଣ୍ଠରେ କହିଲେ—ମୋଟେ ଆଠଟି ଆଜ୍ଞା । ପାଞ୍ଚପୁଅ, ତିନିଝିଅ । ୭ଟି ହୋଇଥାନ୍ତେ—ମାତ୍ର ଏ ଶେଷ ଗର୍ଭଟାରୁ ଜାଆଁଳ ବାହାରି ସଂଖ୍ୟା ଟିକିଏ ବଢ଼ିଗଲା ।

ଦଧିବାମନ ବାବୁ ଏଥର ସତକୁ ସତ ହସିବା କଥା । ମାତ୍ର ସେ ନହସି କହିଲେ—ଆପଣଙ୍କର ରୋଜଗାର କେତେ ?

ଭଦ୍ରଲୋକଟି କହିଲେ—ବେଶୀ ନୁହଁ ଆଜ୍ଞା । ଟଙ୍କା ହଜାରେ ବି ଏପର୍ଯ୍ୟନ୍ତ ପୂରି ପଡ଼ିଲା ନାହିଁ ।

କୋଉ ଟାଇପ ଘରେ ଅଛନ୍ତି ? ଦଧିବାମନ ବାବୁ ପଚାରିଲେ ।

ଛୋଟିଆ ଘରଟାଏ ଅଜ୍ଞା ମୋଟେ ଦୁଇ ବଖରା । ଆମେ କେଉଁ ବଡ଼ ଅଫିସର ହୋଇଛୁ ? ଏଠି ବି ଦେଖୁ ନାହାନ୍ତି ଆଜ୍ଞା ! ସରକାରଙ୍କର କି ପକ୍ଷପାତ ଛାତି ? ପ୍ରଧାନ ସାହେବଙ୍କର ମୋଟେ ଦୁଇଟା ପିଲା—ତାଙ୍କୁ କେତେବଡ଼ହତା ମିଳିଛି । ଆଉ ମୋର ଅଠଟା ପିଲା ଅଥଚ ମତେ ମିଳିଛି ଗୋଟାଏ ଟାଇପ ଫୋର ଘର । ଏଇ କଣ ସମାଜବାଦର ନମୁନା ?

ଦଧିବାମନ ବାବୁ ସତକୁ ସତ ଏଥର ହସିଦେଲେ । ଏ ଭଦ୍ରଲୋକଙ୍କୁ ସେ କଣ ବା କହିବେ ? ସେ କେବଳ ଏତିକି କହିଲେ···କ୍ଷମା କରିବେ ଆଜ୍ଞା । ସମାଜବାଦ କଥା ଛାଡ଼ନ୍ତୁ । ଆପଣଙ୍କ ଭଳି ଲୋକ ଯଦି ଆଠଟି ଲେଖାଁ ପିଲା ଜନ୍ମ କରିବେ ତେବେ ଭାବନ୍ତୁ···ଲୋକସଂଖ୍ୟା କେତେ ବଢ଼ିଯିବ ? ସେମାନେ କୋଉଠି ରହିବେ—କୋଉଠି ଶୋଇବେ—କୋଉଠି ଖାଇବେ—କୋଉଠି ବୁଲିବେ—କୋଉଠି ପାଠ ପଢ଼ିବେ । ସେମାନଙ୍କ ପାଇଁ କେତେ

Digitized by srujanika@gmail.com

ଡାକ୍ତର ଖଞ୍ଜା ହେବେ—କେତେ ଔଷଧ ତିଆରି ହେବ—ଆଉ ସେମାନଙ୍କ ଭିତରୁ ଯଦି ଆପଣଙ୍କ ପୁଅ ଝିଅ ଭଳି ଲୋକ ବାହାରନ୍ତି, ତେବେ ସେମାନଙ୍କୁ ଜଗିବା ପାଇଁ କେତେ ପୁଲିସ ମୁତୟନ ହେବେ ? ନିର୍ଲଜତା ଆଉ ଦାୟିତ୍ୱହୀନତାର ସୀମା ଅଛି ? ଏ ଦେଶ ଶେଷକୁ ପାଗଳା ଗାରଦରେ ପରିଣତ ହେବ କି ନା ।

ଭଦ୍ରଲୋକ ଏତେକ ଶୁଣି ରାଗିଗଲେ । କହିଲେ—ମଣିଷ ଇଚ୍ଛାକଲେ କଣ ପିଲା ଜନ୍ମ ହୋଇଯାନ୍ତି ? ସବୁ ଆଜ୍ଞା ଭଗବାନଙ୍କ ବରାଦ୍ । ଅଠଟି ସନ୍ତାନ ମତେ ଭଗବାନ ଦେଇଛନ୍ତି ।

ଦଧିବାମନ ବାବୁ ଆହୁରି ରାଗିଯାଇ କହିଲେ—ତା' ହେଲେ ଭଗବାନଙ୍କୁ ଗାଳି ଦିଅନ୍ତୁ । ସମାଜବାଦ ଆଉ ସରକାରକୁ ଗାଳି ଦେଉଛନ୍ତି କାହିଁକି ?

ଆଉ ହୁଏତ ଯୁକ୍ତିତର୍କ ଲାଗିଥାନ୍ତା···ମାତ୍ର ମନ୍ତ୍ରୀ ମହୋଦୟ ଅପେକ୍ଷାଗାର ଭିତରକୁ ପଶିଆସିଲେ । ତେଣୁ ସମସ୍ତଙ୍କ ମନ ଓ ମୁହଁ ତାଙ୍କରି ଆଡ଼କୁ ହୋଇଗଲା ।



Digitized by srujanika@gmail.com

# ଧନ୍ୟ ଧନ୍ୟ ମନ୍ତ୍ରୀବର

ଶେଷକୁ ଗ୍ରାମର ଯୁବନେତାମାନେ ସ୍ଥିର କଲେ ଯେ ଆଉ ମୁଖ୍ୟମନ୍ତ୍ରୀଙ୍କ ଆଶା ନ ରଖି ଅନ୍ୟ ଜଣେ ମନ୍ତ୍ରୀଙ୍କୁ ଡକାଯାଉ । ଏଣେ ବ ବର୍ଷାକାଳ ଆସିବାକୁ ବେଶୀ ଡେରି ନାହିଁ । ମେ ମାସ ବା ଜୁନ୍ ପନ୍ଦର ତାରିଖ ପୂର୍ବରୁ ଯେଉଁଠି ହେଲେ ଉତ୍ସବଟିକୁ ସାରିଦେବାକୁ ହେବ । ଚାଇଚୁଙ୍ଗ୍ ଧାନକଟା ସାରିବା ପରେ ପରେ ଯଦି ଉତ୍ସବଟି ନହୁଏ, ତେବେ ତେଣିକି ଲୋକେ ଶାରଦ ଧାନ ବୁଣାବୁଣିରେ ଲାଗିଯିବେ । ସଭାରେ ଲୋକ ପୁରିବେ ନାହିଁ ।

ସ୍ଥିର ହେଲା ଉତ୍ସବଟି ଜୁନ୍ ପ୍ରଥମ ସପ୍ତାହରେ ହେବ । ଯେପରି ହେଲେ ଜଣେ ମନ୍ତ୍ରୀଙ୍କୁ ଡାକିବାକୁ ହେବ । କିଛି ଟଙ୍କା ଯୋଗାଡ଼ କରିବାକୁ ହେବ । ଏଣେ ଗୁହାରିଭେଦା ବି କରିବାକୁ ପଡ଼ିବ । ମନ୍ତ୍ରୀଙ୍କ ସଙ୍ଗେ ଶନିଆପରେ ମଧ ହୋଇଯିବ । ଶେଷରେ ମନ୍ତ୍ରୀଙ୍କ ଆଗମନରେ ଗ୍ରାମରେ ଗୋଟେ ନୂତନ ଉନ୍ମାଦନା ଓ ଉତ୍ତେଜନା ଖେଳିଯିବ । ଗ୍ରାମର ଯାହାସବୁ ଅଭାବ ଅସୁବିଧା ସେକଥା ମନ୍ତ୍ରୀଙ୍କ ଆଗେ ଉପସ୍ଥାପିତ କରି ସେଗୁଡ଼ିକର ପୂରଣ ଲାଗି ଦାବି କରାଯିବ ।

କିନ୍ତୁ ଅସଲ ସମସ୍ୟା ହେଲା—କେଉଁ ଉଦ୍ଦେଶ୍ୟରେ ଉତ୍ସବଟି ଅନୁଷ୍ଠିତ ହେବ । ନାନାପ୍ରକାର ଉଦ୍ଦେଶ୍ୟ ସମ୍ବନ୍ଧରେ ପ୍ରସ୍ତାବମାନ ଆସିଲା—ମାତ୍ର ସବୁ କାଟି ଖାଇଗଲା । ବହୁ କଟାକଟି ପରେ ସ୍ଥିର ହେଲା ଯେ ଏ ଗ୍ରାମରେ ଆମର କବି ଅପର୍ତ୍ତି ପ୍ରଧାଣଙ୍କର ମୃତ୍ୟୁ ସମ୍ବାର୍ଷିକୀ ପାଳନ କରାଯାଉ । ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଖୁବ୍ ଉତ୍ସାହ ହାସ୍ୟରୋଳ ଭିତରେ ଅନୁମୋଦିତ ହୋଇ ଆସୁଛି, ଏହି ସମୟରେ ଯୁବଗୋଷ୍ଠୀର ଜଣେ ଅର୍ଦ୍ଧଶତବର୍ଷ ବୟସ୍କ ପୌଢ଼ ସଭ୍ୟ କହିଲେ—ହେ ! କିଏ ଭଲା କାହାର ମୃତ୍ୟୁସମ୍ବାର୍ଷିକୀ ପାଳନ କରେ ? ତୁମ୍ଭେମାନେ ସମସ୍ତେ ଅପୋଗଣ୍ଡ ଅପଦାର୍ଥ । ଗୋଟେ କଥା କର । ତାଙ୍କ ଘରେ ତାଙ୍କ ବିଧବା ଭାଇବୋହୂ ଅଛନ୍ତି—ତାଙ୍କୁ ପଚାରି ଆସ କବିଙ୍କର ଜନ୍ମ କେଉଁ ବର୍ଷ ହୋଇଥିଲା ? ଆମେ ବରଂ ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ କରିବା ।

Digitized by srujanika@gmail.com

ସଙ୍ଗେ ସଙ୍ଗେ କେତେକ ଯୁବନେତା ମାଇକେଲ ଧରି ଧାଇଁଗଲେ ଏବଂ ସଙ୍ଗେ ସଙ୍ଗେ ସେଠୁ ବୁଝି ଆସି କହିଲେ ଯେ ଜନ୍ମ ତାରିଖ ଜାଣିବା ଆଶା ଛାଡ଼ିଦିଅ । କବିଙ୍କ ଭାଇପୁଅମାନେ ମଧ୍ୟ ଦୁଇ ବର୍ଷ ହେଲା ମଲେଣି । ତାଙ୍କ ଘରକଥା ଛାଡ଼—ତାଙ୍କ ବଂଶରେ ମଧ୍ୟ ଆଉ କେହି ପାଣିଦେବାକୁ ନାହାନ୍ତି । ତେବେ କବିଙ୍କ ମରିବା ସାତ ବର୍ଷ ହେଲାଣି ବୋଲି ଧରି ନିଆଯାଉ । ଶତବାର୍ଷିକୀ ଓ ସପ୍ତବାର୍ଷିକୀ ଶବ୍ଦ ଦୁଇଟି କାନକୁ ପ୍ରାୟ ଏକାଭଳି ଶୁଭୁଛି । ତେଣୁ ମୃତ୍ୟୁସପ୍ତ-ବାର୍ଷିକୀ ବୋଲି ଚଳେଇ ନେବା । କବିଙ୍କ ଘର ପ୍ରାୟ ଭାଙ୍ଗିଗଲାଣି । ବର୍ତ୍ତମାନ ଆମର କର୍ତ୍ତବ୍ୟ ହେଲା—ସେହି ଡିହ ଉପରେ ସଭାଟି କରିବା । ଗ୍ରାମର ଅମର ମହାକବି ଅପର୍ତ୍ତି ପ୍ରଧାନଙ୍କ ନାମରେ ଗୋଟିଏ ବଡ଼ ସ୍ମୃତିମଣ୍ଡପ, ତାଙ୍କର କୌଣସି ଫଟୋ ନଥିବାସ୍ଥଳେ ଗୋଟିଏ ପ୍ରତିମୂର୍ତ୍ତି ନିର୍ମାଣ ଓ ତାଙ୍କ ନାମରେ ଗୋଟିଏ ପାଠାଗାର ସ୍ଥାପନ କରିବାକୁ ହେବ । ମନ୍ତ୍ରୀଙ୍କଠାରୁ ଏଥିଲାଗି କିଛି ସରକାରୀ ସାହାଯ୍ୟ ମିଳିବାର ପ୍ରତିଶ୍ରୁତି ଆଦାୟ କରିବାକୁ ପଡ଼ିବ । ତା'ଛଡ଼ା ମୂଳ ସଡ଼କରୁ ଗ୍ରାମମଧ୍ୟକୁ ଗୋଟିଏ ପକ୍କା ସଡ଼କ ନିର୍ମାଣ କରିବାଲାଗି ମଧ୍ୟ ସରକାରଙ୍କ ପାଖେ ଦାବୀ ଉତ୍ଥାପନ କରାଯିବ । ପୁଣି ଗାଁ ଗୋହିରୀଟା ଏକବାରେ ଖାଲ ହୋଇଗଲାଣି—ଗାଁ ଦାଣ୍ଡଟାକୁ ବି ଉପରୁ ପାଣି ଖାଇଗଲାଣି—ସେଗୁଡ଼ିକ ପୋତିବାଲାଗି କିଛି ଅର୍ଥ ମଞ୍ଜୁର କରାଇବାକୁ ପଡ଼ିବ । ତା'ପରେ ଆଉ ସବୁ ଛୋଟ ଛୋଟ କଥା ଅନେକ ଅଛି । ସେଗୁଡ଼ିକୁ ଶୃଙ୍ଖଳିତଭାବେ ଲିପିବଦ୍ଧ କରିବାପାଇଁ ସ୍ଥାନୀୟ ପ୍ରାଇମେରୀ ସ୍କୁଲର ଚବିଶି ଘଣ୍ଟିଆ ସମାଜସେବୀ ମୁଖ୍ୟଶିକ୍ଷକ ଶ୍ରୀ ଅଣି ସୁବୁଦ୍ଧିଙ୍କ ଉପରେ ଭାର ଦିଆଗଲା । କେଉଁ କେଉଁ ହରିଜନମାନଙ୍କ ଉପରେ ସବର୍ଣ୍ଣମାନେ କି କି ପ୍ରକାର ଅତ୍ୟାଚାର କରିଛନ୍ତି ଏବଂ ତା'ର ବିସ୍ତୃତ ବିବରଣୀ ପ୍ରସ୍ତୁତ କରିବାପାଇଁ, "ପଥପରର ପିତୃଗୃହ ଯିବ ଆଉ କାଲେଜ ହତା ନମାଡ଼ିବ" ଭଳି ଦୂରବସ୍ଥାରେ ଥିବା ଯୁବଗୋଷ୍ଠୀର ଜଣେ ସକ୍ରିୟ ଉଗ୍ରକର୍ମୀ ଶ୍ରୀ ନେହାନନ୍ଦ ଚମ୍ପାଉ ପଟ୍ଟନାୟକଙ୍କ ଉପରେ ଦାୟିତ୍ୱ ଦିଆଗଲା । ଶେଷ କଥା ହେଲା—ବର୍ତ୍ତମାନର ସରପଞ୍ଚ ଶ୍ରୀ କେଳୁଚରଣ ସ୍ୱାଇଁ ଏବଂ ଚେୟାରମ୍ୟାନ ଶ୍ରୀ ଉଗ୍ରସେନ ସୁବୁଦ୍ଧି, ଯେଉଁମାନେକି ଯଥାର୍ଥରେ ବିରୋଧୀଦଳର ସଭ୍ୟ, ମାତ୍ର ଜରୁରୀ ପରିସ୍ଥିତିର ମାଡ଼ରେ ଛଦ୍ମବେଶ ଧରି ଏହି ଦଳରେ ମିଶିଛନ୍ତି ବୋଲି ଜଣାପଡ଼ୁଛି ସେ

Digitized by srujanika@gmail.com

ଦୁହିଁଙ୍କ ନାମରେ ନାନାଦି ଦୁର୍ନୀତି ଓ ଦୁଷ୍କର୍ମଗୁଡ଼ିକୁ ଲିପିବଦ୍ଧ କରି ମନ୍ତ୍ରୀଙ୍କ ଆଗରେ ସେମାନଙ୍କର ଅସଲ ସ୍ୱରୂପ ଖୋଲି ଦେଖାଇଦେବାକୁ ପଡ଼ିବ । ଏହାର ଦାୟିତ୍ୱ ଦିଆଗଲା—ଯୁବନେତା ଶ୍ରୀ ବଟକୃଷ୍ଣ ସାମନ୍ତ ସିଂହାରଙ୍କ ଉପରେ । ତାଙ୍କର ଗର୍ଜନ ବଜ୍ରନିନାଦତୁଲ୍ୟ ଏବଂ ବକ୍ତୃତାର ଭଙ୍ଗୀ ବାଘ ମାରିବା ତୁଲ୍ୟ ।

ଏସବୁ ସିଦ୍ଧାନ୍ତ ପରେ ପ୍ରଶ୍ନ ଉଠିଲା—ଏହି ସ୍ମୃତି ସଭାରେ ମୁଖ୍ୟବକ୍ତା କିଏ ହେବେ ? ସେ ସମ୍ବନ୍ଧରେ ବହୁତ ଆଲୋଚନା ହେଲା । ଓଡ଼ିଶାର ଗୁରୁଜଣ ରେଭେନ୍ସାର୍ଡ଼ ମୁଖ୍ୟବକ୍ତାଙ୍କ ପାଖକୁ ଦୁଇଦିନଧରି ସଭ୍ୟମାନେ ଧାଇଁଲେ ଏବଂ ବହୁ ଓଡ଼ିଆ ଅଧ୍ୟାପକଙ୍କ ପାଖକୁ ଯାଇ ବିନତି ଜଣାଇଲେ । ମାତ୍ର ସମସ୍ତେ ଏକାସ୍ୱରରେ ମନାକଲେ—କହିଲେ—ମହାକବି ଅଗ୍ରତି ପ୍ରଧାନଙ୍କ ନାମ ସେମାନେ ଶୁଣି ନାହାନ୍ତି ଏବଂ ସେମାନେ ଆଉ ଅଧିକ ମହାକବିଙ୍କ ନାମ ମଧ୍ୟ ଶୁଣିପାରିବେ ନାହିଁ କି ସେମାନଙ୍କର ଗୁଣ ଗାଇପାରିବେ ନାହିଁ । କାରଣ ସେମାନଙ୍କ ହାତରେ ଆଉ ବେଶୀ ସମୟ ମଧ୍ୟ ନାହିଁ ।

ତେଣୁ ସର୍ବସମ୍ମତିକ୍ରମେ ସ୍ଥାନୀୟ ହାଇସ୍କୁଲର ସାହିତ୍ୟ ଶିକ୍ଷକ ଯେ କି ଅଧ୍ୟାପକ ହେବାର ଯୋଗ୍ୟ କିନ୍ତୁ ଏହି ଅନ୍ଧ ଦେଶରେ ଏବଂ ଧରାଧରି ଯୁଗରେ ତାଙ୍କୁ ଏଠାରେ ସାମାନ୍ୟ ଶିକ୍ଷକର କର୍ମ ଗ୍ରହଣ କରିବାକୁ ପଡ଼ିଛି ବୋଲି ସର୍ବଦା ଗୁଜବ ଓ ସର୍ବସାଧାରଣରେ କହନ୍ତି—ସେହି ପ୍ରତିଭାବାନ ପଣ୍ଡିତ ଶ୍ରୀ ଶିଶୁବେଦୀ ସାହୁ ଡବଲ୍ ଏମ୍: ଏ: ଏ ( ଓଡ଼ିଆ ଓ ସଂସ୍କୃତ )ଙ୍କୁ ମୁଖ୍ୟ-ବକ୍ତାରୂପେ ମନୋନୀତ କରାଗଲା । ମହାକବି ଅଗ୍ରତି ପ୍ରଧାନଙ୍କ ଉପରେ ସେ ଦୁଇଦିନ ଓ ଦୁଇରାତି ଲାଗି ଗୋଟିଏ ପେପର୍ ପ୍ରସ୍ତୁତ କଲେ ଏବଂ ତାହାକୁ ସଭାରେ ପଢ଼ିବାଲାଗି ପ୍ରସ୍ତୁତ ରହିଲେ ।

ଅତଃପର ସବୁ କାର୍ଯ୍ୟ ଯଥାଯଥଭାବେ ଚାଲିଲା । ଗ୍ରାମରୁ ଚାନ୍ଦାଭେଦା ହେଲା । ସ୍ୱେଚ୍ଛାସେବକମାନେ ବାରମ୍ବାର ତିନିଦିନ ଖାଲି କଟକ ଭୁବନେଶ୍ୱର ଧାଇଁଲେ ଓ ଫେରିଲେ । ଲୋକସମ୍ପର୍କ ବିଭାଗକୁ ମଧ୍ୟ ସମ୍ପୃକ୍ତ କରାଗଲା । ଚାନ୍ଦୁଆ, ମଞ୍ଚ ଆଦି ପ୍ରସ୍ତୁତ ହୋଇଗଲା ।

Digitized by srujanika@gmail.com

ତା'ପରେ ଆସିଲା ସେହି ଶୁଭ ଦିବସଟି । ଅପରାହ୍ଣ ଗୁରଟାବେଳକୁ ମୁଖ୍ୟ ରାସ୍ତା ଠାରୁ ସଭା ମଣ୍ଡପ ପର୍ଯ୍ୟନ୍ତ ଆବାଳ ବୃଦ୍ଧବନିତା ମନ୍ତ୍ରୀଙ୍କୁ ପାଛୋଟି ଆଣିବାଲାଗି ଠିଆ ହୋଇ ରହିଲେ । ମଂତ୍ରୀ ଛଅଟାବେଳେ ଯେମିତି ପହଞ୍ଚିଲେ ସାଙ୍ଗେ ସାଙ୍ଗେ ସାତୋଟି ବମ୍ଫାଜା ବାଣ ଲଗେ ଲଗେ ଫୁଟିଉଠିଲା । ଗ୍ରାମାଙ୍ଗନାମାନେ ହୁଳହୁଳି ନାଦରେ ବାଉଁଶ ବଣକୁ ଥରାଇଦେଲେ । ମଂତ୍ରୀଙ୍କ ଆଗେ ଆଗେ ଦୁଇଟି ଝିଅ ଶଙ୍ଖ ଫୁଙ୍କି ଫୁଙ୍କି ଗ୍ଲଲେ । ତାଙ୍କ ଆଗରେ ଗ୍ରାମର ଶ୍ରୀ ଗୋପୀନାଥଜୀଉ ମନ୍ଦିରର ବାନା ଟେକି ରଖି ନୃତ୍ୟ ବାଦ୍ୟ ଆଦି ସହ ଗୋଟିଏ ସଂକୀର୍ତ୍ତନ ମଣ୍ଡଳୀ ମଧ୍ୟ ଝାଞ୍ଜ ମୃଦଙ୍ଗ ବଜାଇ ଗ୍ଲଲେ । ସେମାନେ ଖୁବ୍ ଉଚ୍ଚକଣ୍ଠରେ ଗାଇ ଗାଇ ଗ୍ଲଥାନ୍ତି—

ଶୁଣ ଶୁଣ ମଂତ୍ରୀବର ଆମ ଗ୍ରାମ ସମାଗ୍ଲର
ସବୁଠୁଁ ଅବହେଳିତ ହୋଇ ଆମେ ମରୁଛୁତ
ଆପଣ ଆମ ସହାୟ—କରୁଅଛୁ ଜୟ ଜୟ ।

ସଙ୍କୀର୍ତ୍ତନ ମଣ୍ଡଳୀର ଅଗ୍ରଭାଗରେ କେତେକ ବ୍ୟକ୍ତି ଢୋଲ, ଡ୍ରମ, ଶଙ୍ଖ ଆଦି ବାଦ୍ୟ ପିଟିପିଟି ଗ୍ଲଥିଲେ ଏବଂ ମହୁରି ଓ ବଗୁଲ ଆଦିରେ ସଦ୍ୟ ସିନେମା ସଙ୍ଗୀତର ସୁରଟିଏ ବଜାଇ ବଜାଇ କେତେକ ଗ୍ଲଥିଲେ । ହଠାତ୍ ଜଣେ ପ୍ରଧାନମନ୍ତ୍ରୀଙ୍କ ନାମ ଧରି ଜିନ୍ଦାବାଦ୍ କଲେ, ତା'ପରେ ମୁଖ୍ୟମନ୍ତ୍ରୀଙ୍କ ନାମରେ ଜିନ୍ଦାବାଦ୍ ହେଲା । ସେଇଠୁ ଆଗନ୍ତୁକ ମନ୍ତ୍ରୀଙ୍କ ନାମ ଧରି ଜିନ୍ଦାବାଦ ଗ୍ଲଲା । ସବାଶେଷରେ ଏସବୁର ମୁଖ୍ୟ ଆୟୋଜକ ଏବଂ ନେତାହେବାକୁ ଚେଷ୍ଟା ଚଳାଉଥିବା ଜଣେ ଯୁବନେତାଙ୍କ ନାମଧରି ମଧ୍ୟ ବହୁବାର ଜିନ୍ଦାବାଦ ଗ୍ଲଲା । ମନ୍ତ୍ରୀଙ୍କ ଆଗମନ ବାର୍ତ୍ତା ଶୁଣି ଆଖପାଖ ଗାଁଗଣ୍ଡାରୁ ଶତ ଶତ ଲୋକ ଧାଇଁଆସିଲେ । କେହି ପ୍ରଗ୍ଲର କରିଦେଇଥିଲା ଯେ ଆଜିକାଲି ମନ୍ତ୍ରୀମାନେ ଯୁଆଡ଼େ ଯାଉଛନ୍ତି ସେଆଡ଼େ ଖାଲି ଜମି, ବାଡ଼ି, ଟଙ୍କା, ଡିଅ ଓ ଘରମାନ ବାଣ୍ଟୁଛନ୍ତି । ତେଣୁ ଏ ଆଶାରେ ମଧ୍ୟ ବହୁଲୋକ ଗାଁ ଦାଣ୍ଡରେ ଜମିଯାଇ ଭିଡ଼ କରିଦେଲେ । ଫଳରେ ଗାଁ ଦାଣ୍ଡରେ ସୋରିଷ ପକାଇବାକୁ ଜାଗା ନଥିଲା । ଭିଡ଼ ଏପରି ହେଲା ଯେ ମନ୍ତ୍ରୀ ଆଉ ଆଗକୁ ପାଦେ ମାତ୍ର ଗତି କରିପାରିଲେ ନାହିଁ । ତାଙ୍କ ଗ୍ଲରିପଟେ ଗ୍ଲରିଟା

Digitized by srujanika@gmail.com

ସେନ୍ଫ୍ରୋମାକସକୁ ଷ୍ଟୁଲ ଭିତରେ ରଖି ଗୃହରକ୍ଷଣ ବ୍ୟକ୍ତି ଗୁଳଥାନ୍ତି । ମାତ୍ର ମନ୍ତ୍ରୀଙ୍କର ସାନ୍ନିଧ୍ୟ, ସାଯୁଜ୍ୟ, ସାଲୋକ୍ୟ ଓ ସାଷ୍ଟି ପାଇବାଲାଗି ଯୁବ, ପ୍ରୌଢ଼ ଓ ବୃଦ୍ଧ ଟାଉଟରମାନେ ଏତେ ବ୍ୟଗ୍ର ହୋଇଉଠିଲେ ଯେ ଧକ୍କା ଧକ୍କାରେ ଗୋଟିଏ ସେନ୍ଫ୍ରୋମାକ୍ସ ଲଇଟ୍ ତଳେ ଖସିପଡ଼ିଲା ଓ ହୁତୁ ହୁତୁ ହୋଇ ନିଆଁ ଜଳଉଠିଲା । ଗୋହିରୀରେ ଥିବା ଶୁଖିଲା ବାଉଁଶପତ୍ର ଉପରେ ଚର୍ ଚର୍ ହୋଇ ନିଆଁ ଚରିଗଲା ମୁହୂର୍ତ୍ତକ ଭିତରେ । ଏହା ଦେଖି ଲୋକେ କାଳକାଳିଆ ହୋଇ ଯେ ଯୁଆଡ଼େ ଆତଙ୍କରେ ଦଉଡ଼ିବା ଆରମ୍ଭ କରି-ଦେଲେ ଏବଂ ନିଆଁ ଦେଖି କେତେକ ଧର୍ମଶ୍ରାନ୍ତ ବୁଢ଼ାଭିଳିଆ ଲୋକେ ହରିବୋଲ - ହରିବୋଲ ବୋଲି ରଡ଼ିଛାଡ଼ିଲେ । ଜନତା ଭିତରୁ ଭୁମୁକ ହରିବୋଲ ଶବ୍ଦ ଶୁଣି ଗ୍ରାମର ମୁସଲମାନ ଅଧିବାସୀମାନେ ଭୁମୁକତର ଶବ୍ଦରେ "ଆଲ୍ଲା ହୋ ଆକବର" "ଅଲ୍ଲା ହୋ ଆକବର" ବୋଲି ଚିତ୍କାର ଆରମ୍ଭ କରିଦେଲେ । ମାତ୍ର ଭାଗ୍ୟ ଭଲ ନିଆଁଟା ଆଉ ଅଧିକ ଅଗ୍ରସର ନହୋଇ ଗୁଆଁକୁ ଗୁଆଁ ଲିଭିଗଲା ଏବଂ ଲୋକେ ନିଆଁ ଉପରେ ବାଲି, ମାଟି ଓ ପାଣି ଢାଳି ତାକୁ ସଂପୂର୍ଣ୍ଣଭାବେ ଲିଭାଇ ଦେଲେ ।

ଏହାପରେ ଲୋକେ ପାତଳ ପଡ଼ିଯିବାରୁ ମଂନ୍ତ୍ରୀ ସୁବିଧାରେ ଗୋହିରୀଟି ପାରିହୋଇ ଯିବାକୁ ଚଞ୍ଚଳ ପଦକ୍ଷେପ କରୁ କରୁ ଗୋଟିଏ ଖମଣାରେ ମନ୍ତ୍ରୀଙ୍କ ଗୋଡ଼ ପଶିଗଲା । ମନ୍ତ୍ରୀ ପ୍ରାୟ କାତ୍ ହୋଇ ତଳେ ପଡ଼ଯାଇଥାନ୍ତେ ମାତ୍ର ନିଆଁ ଲାଗିବା ପରଠାରୁ ସାବଧାନ ହୋଇଯାଇଥିବା ଏସ୍.ଡି.ଓ. ବି.ଡ଼ି.ଓ ତହସିଲଦାର ଓ ପୋଲିସ ଏସ୍.ଆଇ ସାଙ୍ଗେ ସାଙ୍ଗେ ମନ୍ତ୍ରୀଙ୍କୁ ଗୁଣିଆଡ଼ୁ ଧରିନେଇ ଏଇ ଆସନ୍ନ ପତନରୁ ରକ୍ଷା କରିଦେଲେ । ତା'ପରେ ମନ୍ତ୍ରୀଙ୍କୁ ଗୋଟିଏ ଘୋଡ଼ାଦଳ ପୂର୍ଣ୍ଣ ଦୁର୍ଗନ୍ଧ ପଙ୍କୋମୟ ପୁଷ୍କରିଣୀ ବନ୍ଧରେ ଖୁବ୍ ଧୀରେ ଧୀରେ ଯିବାକୁ ପଡ଼ିଲା । ଏମିତି ବହୁ ପଡ଼ାଉଠାରେ ଅବଶେଷରେ ମନ୍ତ୍ରୀମହୋଦୟ ଗ୍ରାମ ଭିତରେ ପ୍ରବେଶ କରି ସଭା ମଞ୍ଚକୁ ଉଠିଲେ ଏବଂ କ୍ଷୁଦ୍ର ମଞ୍ଚଟି ଉପରେ ବହୁଶୂନ୍ୟ ଆସନ ଭିତରୁ ଗୋଟିକୁ ପୂର୍ଣ୍ଣ କରି ଉପବେଶନ କଲେ । ତା'ପରେ ଗ୍ରାମର ଯୁବନେତାମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ଚଉକିକୁ ଅଧିକାର କଲେ । ଆଗରୁ ପ୍ରସ୍ତୁତ ହୋଇ ରହିଥିବା ଆଠଜଣ ଅଷ୍ଟମବର୍ଷୀୟା ବାଳିକା ଆଠଟି ସଦାବହାର

ଫୁଲର ମାଳା ଧରି ହସି ହସି ମଞ୍ଚ ଉପରକୁ ଉଠିଲେ ଏବଂ ଯୁବନେତା-ମାନେ ମୁଣ୍ଡ ନୁଆଇଁ ସେଗୁଡ଼ିକୁ ଗ୍ରହଣ କଲେ । ମନ୍ତ୍ରୀଙ୍କ ପାଖକୁ ଆସିଥିବା ବାଳକାଟିର ହାତ ମନ୍ତ୍ରୀଙ୍କ ଗଳାକୁ ନ ପାଇବାରୁ ଝିଅଟିକୁ ଟେବୁଲ ଉପରେ ଠିଆକରାଇ ଦିଆଗଲା ଏବଂ ମନ୍ତ୍ରୀ ତା'ଠାରୁ ସଦାବହାର ଫୁଲର ମାଳାଟିକୁ ଗ୍ରହଣ କରି ଝିଅଟିକୁ ତଳକୁ ଓହ୍ଲାଇଦେଲେ ।

ଶେଷରେ ଦେଖାଗଲା ମୁଖ୍ୟବକ୍ତା ଶ୍ରୀ ଶିଶୁବେଦୀ ସାହୁ, (ଡବଲ ଏମ୍. ଏ. ଓଡ଼ିଆ ଓ ସଂସ୍କୃତ) ବିରାଟ ଜନତାର ଭିଡ଼କୁ ଭେଦକରି ବହୁ କଷ୍ଟରେ ମଞ୍ଚ ଉପରକୁ ଆସି ଦେଖିଲେ ତାଙ୍କ ପାଇଁ ଆଉ ଚଉକି ନାହିଁ । ଯୁବନେତାମାନଙ୍କ ଭିତରୁ ଜଣେ ତାଙ୍କୁ ଭିଡ଼ିନେଇ ଆପଣାସିଟ୍‌ରୁ ଅଧିକରେ ଜବରଦସ୍ତି ବସାଇଦେଲେ । ସଭାକାର୍ଯ୍ୟ ଚାଲିଲା ।

ଏଣେ ମନ୍ତ୍ରୀ ମହାଶୟ ଏସବୁ ବ୍ୟବସ୍ଥାର ଅନୁଶୀଳନକରି ମନେ ମନେ କିଛି ଗୋଟାଏ ଭାବିଚାଲିଥାନ୍ତି । ଏଣେ ପୂର୍ବରୁ ଏ ଗାଁରେ ପାଦ ଦେଲାବେଳକୁ ସେ ଏହି ନିର୍ବାଚନ ମଣ୍ଡଳୀର ମାନ୍ୟବର ଏମ୍. ଏଲ୍. ଏ ଙ୍କୁମଧ୍ୟ ମନେ ମନେ ଖୋଜୁଥାନ୍ତି । ତାଙ୍କର ଖିଆଲ ନଥିଲା ଯେ ଏଠାକାର ଏମ୍. ଏଲ୍. ଏ ଜରୁରୀ ପରିସ୍ଥିତି ଜାରି ହେବାର ଅଠଦିନ ପରେଇ ମିସାରେ ଆରେଷ୍ଟ ହୋଇ ଜେଲ୍‌ରେ ରହିଛନ୍ତି । କିନ୍ତୁ ଭଦ୍ରଲୋକଙ୍କ ଅନୁପସ୍ଥିତି କେହି ଅନୁଭବ କଲାଭଳି ଜଣାପଡୁନଥାଏ । ଏଭଳି ଏମ୍. ଏଲ୍. ଏ. ଯୋଉ ଅଞ୍ଚଳର ସେ ଅଞ୍ଚଳଟି ଆଉ ଅଧିକ କ'ଣ ହୋଇଥାନ୍ତା ? ଗାଁର ରାସ୍ତାଘାଟ ଏମିତି— ପୋଖରୀ ଏମିତି—ଲୋକମାନେ ଏମିତି ଆଉ ଯୁବନେତାମାନଙ୍କର ମତିଗତି ଏମିତି ନହୋଇ ଆଉ କ'ଣ ବା ହୁଅନ୍ତା ? ଏ ଅଞ୍ଚଳରେ ପ୍ରକୃତ ଜନନେତା ଥିଲେ କ'ଣ ଏଠି ଏମିତି ବ୍ୟାପାର ଘଟୁଥାନ୍ତା ? ତା'ଛଡ଼ା ମନ୍ତ୍ରୀ ଭାବୁଥାନ୍ତି ଏ କି ପ୍ରକାରର ସାମନ୍ତବାଦୀ ଯୁଗର ଅଭ୍ୟର୍ଥନା ? ଏଥିରେ ଭଲ ଉଦ୍ୟୋକ୍ତାମାନଙ୍କର ଏତେ ଟିକିଏ ଆନ୍ତରିକତା ଅଛି ? ଗ୍ରାମ ପ୍ରତି ବା ସମାଜ ଜୀବନ ପ୍ରତି ଏତେ ଟିକେ ମମତା ଅଛି ? ଟାଉଟରଙ୍କର ଶିଷ୍ୟ-ପ୍ରଶିଷ୍ୟମାନେ ଯାହା ହେବାର କଥା ତା' ହୋଇଛନ୍ତି । କିନ୍ତୁ ଏମାନଙ୍କୁ ସେ ଆଜି ଗୋଟିଏ ଶିକ୍ଷା ନଦେଇ ଛାଡ଼ିବେ ନାହିଁ । କିପରି ଶିକ୍ଷା ଦେବେ— ସେହିକଥା ମନ୍ତ୍ରୀ ଭାବି ଲାଗିଲେ ।

Digitized by srujanika@gmail.com

ପ୍ରଥମେ ସଙ୍ଘର ସମ୍ପାଦକ ଗୋଟିଏ ଦ୍ୱାଦଶ ପୃଷ୍ଠାର ସାରଗର୍ଭକ ରିପୋର୍ଟ ପାଠକଲେ । ସେଥିରେ ଯୁବସଂଘର ଅତୀତ କାର୍ଯ୍ୟାବଳୀ ବର୍ଣ୍ଣିତ ନହୋଇ ଏ ଗ୍ରାମର ସୁବିଧା ଅସୁବିଧା ସମ୍ପର୍କରେ ବହୁ ଦାବି କରାଯାଇଥିଲା— ଏବଂ ଏ ଗ୍ରାମରେ ଶୀଘ୍ର ଗୋଟିଏ କଲେଜ ସ୍ଥାପିତ ହେଉ ଏଥିପାଇଁ ପ୍ରଧାନ ଯୁକ୍ତି ସ୍ୱରୂପ ଦର୍ଶାଯାଇଥିଲା ଯେ ଏ ଗ୍ରାମ ଓ ଏହାର ଆଖ ପାଖ ଗ୍ରାମର ଲୋକସଂଖ୍ୟା ଏହାର ଆୟତନକୁ ଚାହିଁ ବହୁ ଅଧିକ ଏବଂ ଏମାନଙ୍କର ଦଶମାଇଲ ଦୂର କଲେଜରେ ପିଲାଙ୍କୁ ପଢ଼ାଇବାର ଆର୍ଥିକ ସମ୍ବଳ ନାହିଁ । ହିସାବ ସ୍ୱରୂପ ସେ ଦର୍ଶାଇଲେ ଯେ ଏଠି ଗୋଟିଏ ମୂଲିଆ ଶ୍ରେଣୀର ଲୋକ ଅନ୍ୟୁନ ତିନିପୁତ୍ର ଓ ଓ ତିନିକନ୍ୟାର ଜନ୍ମ ପାଇଁ ଦାୟୀ, ମନ୍ତ୍ରୀ ଏ ଖବର ଶୁଣି ଚମକି ପଡ଼ିଲେ ।

ରିପୋର୍ଟ ପଢ଼ାସାରିବା ପରେ ମନ୍ତ୍ରୀ ମୁଖ୍ୟବକ୍ତା ଶ୍ରୀ ଶିଶୁବେଦୀ ସାହୁ ଡବଲ ଏମ୍. ଏ. ( ଓଡ଼ିଆ ଓ ସଂସ୍କୃତ ) ଙ୍କୁ ମହାକବି ଅପର୍ତ୍ତି ପୃଷ୍ଟାଣଙ୍କ ସମ୍ବନ୍ଧେ ଗୋଟିଏ ନାତିଦୀର୍ଘ ଭାଷଣ ଦେବାକୁ ଅନୁରୋଧ କଲେ । ଅତଃପର ମୁଖ୍ୟବକ୍ତା ଚାରିପାଞ୍ଚଥର ପାନଛେପ କାଡ଼ିସାରି ଓ ଗଳାଖାଙ୍କି ତାଙ୍କ ଲିଖିତ ପେପରଟି ପାଠକଲେ । ସେ ପ୍ରଥମେ ସାହିତ୍ୟ କ'ଣ ? ନବରସର ପ୍ରକାରଭେଦ —ଧ୍ୱନିବାଦ ଓ ବକ୍ରୋକ୍ତି ବାଦ କ'ଣ—ବାକ୍ୟାଳଙ୍କାର ଅର୍ଥାଳଙ୍କାର ଭିତରେ ତଫାତ୍ କଣ ? ଧ୍ୱନି ଓ ବ୍ୟଞ୍ଜନାର ଭେଦ କିପରି ବୁଝିବି—ଏସବୁ ବିଷୟରେ ଆଠ ପୃଷ୍ଠା ପାଠ କରିସାରି ସାହିତ୍ୟ ବିଷୟରେ ପାଶ୍ଚାତ୍ୟ ଜଡ଼ବାଦୀ ପଣ୍ଡିତ-ମାନଙ୍କର ମତାମତ କିପରି ଭାରତୀୟ ଆଧ୍ୟାତ୍ମିକ ପରମ୍ପରାର ବିରୋଧୀ ତାହା ତିନି ପୃଷ୍ଠାରେ ଦର୍ଶାଇଲେ । ଶେଷରେ ମହାକବି ଅପର୍ତ୍ତି ପୃଷ୍ଟାଣଙ୍କ ସମ୍ବନ୍ଧେ ଗୋଟିଏ ଲମ୍ବାବାକ୍ୟ ଉଦ୍‌ଗିରଣ କରି ପେପର ପଢ଼ା ଶେଷ କଲେ । ସେ ଲମ୍ବା ବାକ୍ୟଟି ହେଉଛି—ସୁଧୀ ବୃନ୍ଦ ! ସାହିତ୍ୟର ଏହି ଯେଉଁ ଗୁରୁଗମ୍ଭୀର ତତ୍ତ୍ୱପୂର୍ଣ୍ଣ ବିଶ୍ଳେଷଣାତ୍ମକ ଭୂମିକା ମୁଁ ଦେଲି—ତାହା ଉପରେ ଦଣ୍ଡାୟମାନ ହୋଇ ଦେଖିଲେ ଆପଣମାନେ ଜାଣି ପାରିବେ—ମହାକବି ଅପର୍ତ୍ତି ପୃଷ୍ଟାଣ ଯେ'କି ଅନ୍ୟୁନ ଚାରୋଟି ଗ୍ରନ୍ଥାବଳୀର ରଚୟିତା ଲେଖିଯାଇଛନ୍ତି ବୋଲି ଅଧୁନା ଲୋକମୁଖରୁ ଶୁଣାଯାଉଛି—ମାତ୍ର ଏ ଯାବତ୍ ଦେଖା ଯାଇନାହିଁ; କାରଣ ତାଙ୍କର ଅମୂଲ୍ୟ ଲେଖା ଗୁଡ଼ିକ ଏ ପର୍ଯ୍ୟନ୍ତ ସାଂସ୍କୃତିକ ବିଭାଗ ବା ଏକାଡେମୀ ବା ବିଶ୍ୱବିଦ୍ୟାଳୟର ସୁଦୃଷ୍ଟି ଆକର୍ଷଣ କରିନାହିଁ ଏବଂ ମୂର୍ଖ ପଇସା ଖୋର ପ୍ରକାଶକମାନଙ୍କ ଅବହେଳା ଯୋଗୁଁ—ସୁଧୀଜନଙ୍କ ସମ୍ମୁଖ ଗୋଚରୀଭୂତ

Digitized by srujanika@gmail.com

ହୋଇନାହିଁ—ସେଭଳି କବି ଏ ଗ୍ରାମରେ ଜନ୍ମ ଲଭକରି ଏ ଗ୍ରାମକୁ ଏ ଜିଲ୍ଲାରେ ଜନ୍ମି ଏ ଜିଲ୍ଲାକୁ—ଏ ପ୍ରଦେଶରେ ଜନ୍ମି ଏ ପ୍ରଦେଶକୁ—ଏ ଦେଶରେ ଜନ୍ମି ଏ ଦେଶକୁ ଓ ଏ ବିଶ୍ୱରେ ଜନ୍ମି ଏ ବିଶ୍ୱକୁ ଧନ୍ୟ କରିଛନ୍ତି ବୋଲି ଆମ୍ଭମାନଙ୍କୁ ନିଶ୍ଚୟ ମାନିବାକୁ ପଡ଼ିବ ।

ଘନଘନ କରତାଳି ଭିତରେ ମୁଖ୍ୟବକ୍ତା ବସିପଡ଼ି ଗ୍ଲାସେ ପାଣି ପିଇବା ଅବସ୍ଥାରେ ମିସାରେ ଆରେଷ୍ଟ ହୋଇଯାଇଥିବା ଏମ୍‌. ଏଲ୍‌. ଏ ଙ୍କ ଶୂନ୍ୟସ୍ଥାନକୁ ପୂରଣ କରିବା ଚେଷ୍ଟାରେ ଥିବା ଏବଂ ଏସବୁ ବ୍ୟାପାରର ମୂଳ ଉଦ୍ୟୋକ୍ତା ଶ୍ରୀମାନ୍ ଯୁବନେତା ହୟଗ୍ରୀବ ହରିଚନ୍ଦନ ଖୁବ୍ ଜୋର୍‌ରେ ଠିଆହୋଇ ସଙ୍ଗେ ସଙ୍ଗେ ଉଚ୍ଚୈଃ ସ୍ୱରରେ ଓଜସ୍ୱିନୀ ଭାଷଣ ଦେବାକୁ ଆରମ୍ଭ କଲେ···ମୁଁ ମାନ୍ୟବର ମନ୍ତ୍ରୀଙ୍କୁ ସଫା ସଫା କହିଦେବାକୁ ଚାହେଁ—ସେ ଏବଂବିଧ ମହାକବି ଅପର୍ତ୍ତି ପୁହାଣଙ୍କୁ ଆଜିଠାରୁ ଚିହ୍ନି ରଖନ୍ତୁ । ରସ, ଧ୍ୱନି, ବ୍ୟଞ୍ଜନା, ଅର୍ଥାଳଙ୍କାର, ଶବ୍ଦାଳଂକାର ଓ ବାକ୍ୟାଳଙ୍କାର ପ୍ରଭୃତି ମହାକାବ୍ୟର ପ୍ରଣେତା ମହାକବି ଅପର୍ତ୍ତି ପୁହାଣ କେମିତି ମଲେ ତାହା ଆପଣମାନେ ଜାଣନ୍ତି ? କୋଟି କୋଟି ମାନବ ସନ୍ତାନଙ୍କ ପରି ସେ ନିଶ୍ଚୟ ଆଜି ବଞ୍ଚିଥାନ୍ତେ । କିନ୍ତୁ ସେ କିପରି ମଲେ ? ତାଙ୍କ ମୃତ୍ୟୁପାଇଁ କିଏ ଦାୟୀ ? ଦାୟୀ ହେଉଛନ୍ତି ମୂଳରୁ ଆମର ପୂର୍ବବର୍ତ୍ତୀ ଦୁର୍ନୀତିଗ୍ରସ୍ତ ସରକାର ଯୋଉ ଦଳପୋଖରୀଟି ଆପଣମାନେ ଦେଖୁଛନ୍ତି, ତାହା ସେହି ପୂର୍ବତନ ଦୁର୍ନୀତିଗ୍ରସ୍ତ ସରକାର ଅମଳର । ସେଥିରୁ କୋଟି କୋଟି ସଂଖ୍ୟାରେ ମ୍ୟାଲେରିଆ ମଶକମାନେ ଉଡ଼ିଆସି ହିନବ୍ରତ ମହାକବି ଅପର୍ତ୍ତି ପୁହାଣଙ୍କୁ ଆପାଦମସ୍ତକ କାମୁଡ଼ି ପକାଇଲେ । ମହାକବି ମାସ ମାସ ମ୍ୟାଲେରିଆ ଭୋଗିଲେ । ତଥାପି ଆମର ପୂର୍ବତନ ଦୁର୍ନୀତିଗ୍ରସ୍ତ ସରକାର ଏକଥା ଜାଣିପାରିଲେ ନାହିଁ । ଶେଷରେ ମହାକବିଙ୍କ ପେଟରେ ପିଲ୍ହା ବାହାରିଲା । ସେ ରକ୍ତଶୂନ୍ୟ ହୋଇଗଲେ, ତାଙ୍କର ଲିଭର୍ ଖରାପ ହୋଇଗଲା । ତା'ପରେ ଦିନେ ଚାଉଁଳ ବଣରେ ଝାଡ଼ାଫେରି ଆସୁ ଆସୁ ସେହି ଗୋହିରୀ ଖାଲରେ ପଡ଼ି ତାଙ୍କ ଗୋଡ଼ ଛେଚା ହୋଇଗଲା । ଯାହା ଆଜି ଆମର ମାନ୍ୟବର ମଂତ୍ରୀଙ୍କର ଘଟିଥାନ୍ତା । ଅତଃପର ମହାକବି ଆଉ ଚାଲିପାରିଲେ ନାହିଁ । ଶୁଣାଯାଏ ଗୋଟାଏ ରାତି ମହାକବି ଅପର୍ତ୍ତି ପୁହାଣ ସେହି ଗୋହିରୀରେ ପଡ଼ିରହିଲେ । ତଥାପି ସେଇ ଦୁର୍ନୀତିଗ୍ରସ୍ତ ସରକାର ତାଙ୍କର କିଛି ଖୋଜ-

Digitized by srujanika@gmail.com

ଖବର ନେଲା ନାହିଁ । ତା' ଆରଦିନ ସକାଳୁ ଦେଖାଗଲା ତାଙ୍କର ପ୍ରାଣବାୟୁ ଉଡ଼ିଯାଇଛି ଏବଂ ତାଙ୍କର ଗୋଟିଏ ହାତକୁ ଶୃଗାଳଟିଏ ଓଟାରି ନେଇ ଖାଇ-ଯାଇଛି ଏବଂ ଗୋଟିଏ ଗୋଡ଼କୁ ଶ୍ୱାନଟିଏ ତା' ତୀକ୍ଷ୍ଣ ଦାନ୍ତରେ ରେକେଟି ଲାଗିଛି । କାରଣ ମହାକବିଙ୍କ ଗୋଡ଼ରେ ହାଡ଼ ବ୍ୟତୀତ ଅନେ୍‌ ବି ମାଂସ ନଥିଲା । ହାୟ ହାୟ ! ତଥାପି ମଧ୍ୟ ସେତେବେଳେ ଆମ୍ଭମାନଙ୍କର ପୂର୍ବତନ ଏମ୍.ଏଲ୍.ଏ. ଶ୍ରୀ ଚୌର ଚନ୍ଦ୍ରାମଣି ପରିଡ଼ା ଯେକି ବର୍ତ୍ତମାନ ମିସାରେ ଆରେଷ୍ଟ ହୋଇ କାରାଗାର ଭୋଗକରି ଆପଣା ଦୁଷ୍କୃତ କର୍ମର ଫଳ ଭୋଗ କରୁଛନ୍ତି ତାଙ୍କର ଦେଖାଦର୍ଶନ ନଥିଲା । ବନ୍ଧୁଗଣ ! ମହାକବି ଅପର୍ତ୍ତି ପ୍ରଧାଣଙ୍କର ମରଦେହ ମାଟିରେ ମିଶିଗଲା ଆପଣାଛାଏଁ । ମାତ୍ର ତାଙ୍କର ପ୍ରତିଭାଶାଳୀ ଅମର ଆତ୍ମାର ମୃତ୍ୟୁ ନାହିଁ । ସେ ବଞ୍ଚିଥିଲେ ବଞ୍ଚିଛନ୍ତି ଓ ବଞ୍ଚିଥିବେ । ତାଙ୍କର ଅସଂଖ୍ୟ ସାହିତ୍ୟ ଏହି ମାଟିତଳେ ହୁଏତ କୋଉଠି ଲୁଚି ରହିଛି । ଆମକୁ ତାହା ଖୋଳି ବାହାର କରିବାକୁ ପଡ଼ିବ । ସେହି ଅମୂଲ୍ୟ ରତ୍ନରାଜିକୁ ଖୋଳି ବାହାର କରିବାପାଇଁ ଆମର ଲୋକପ୍ରିୟ ସରକାର ନିଶ୍ଚୟ ଆମକୁ ସାହାଯ୍ୟ କରିବେ । ସେ ସାହାଯ୍ୟ କ'ଣ ? ଗୋଟିଏ କଥାରେ ତିନଥର କହିଲେ ତା' ହେଉଛି ଅର୍ଥ··· ଅର୍ଥ···ଅର୍ଥ ।

ଆଉ ମନ୍ତ୍ରୀ ମହୋଦୟ ସମ୍ଭାଳି ପା'ରଲେ ନାହିଁ । ସେ ତତ୍‌କ୍ଷଣାତ୍ ଚଉକିରୁ ଉଠିପଡ଼ିଲେ ଏବଂ ବକ୍ତାଙ୍କୁ ଜବରଦସ୍ତି ବସାଇ ଦେଇ କହିଲେ—

ବନ୍ଧୁଗଣ ! ମୁଁ ସବୁ ବୁଝି ସାରିଲିଣି । ଆଉ ଅଧିକ ବାକ୍ୟାଳାପ ନିଷ୍ପ୍ରୟୋଜନ । ମୁଁ ବର୍ତ୍ତମାନ ଗୋଟିଏ କଥା ବୁଝୁଛି, ତାହା ହେଉଛି ମହାକବି ଅପର୍ତ୍ତି ପ୍ରଧାଣଙ୍କୁ ମାରିଥିବା ଏହି ଗାଁ ଗୋହିରୀଟିକୁ ସାବାଡ଼ କରିବାକୁ ହେବ । ମୁଁ ମୋର ଯୁବବନ୍ଧୁମାନଙ୍କୁ ଏହି ମୁହୂର୍ତ୍ତରେ ଆହ୍ୱାନ କରୁଛି, ଆସନ୍ତୁ ! ସମସ୍ତେ ମୋ ସଙ୍ଗରେ ୫୦ଟି ଟୋକେଇ ଓ ୫୦ଟି କୋଦାଳ ଆଣନ୍ତୁ । ଆଜି ଏହି ମୁହୂର୍ତ୍ତରେ ଆମେ ସମସ୍ତେ ମିଶି ଏହି ସଭାମଞ୍ଚକୁ ଖୋଳିବା । ଏହି ସଭାମଞ୍ଚଉପରେ ମହାକବି ଅପର୍ତ୍ତି ପ୍ରଧାଣଙ୍କର ଘର ଥିଲା । ନିଶ୍ଚୟ ତାଙ୍କର ଅମୂଲ୍ୟ ସାହିତ୍ୟରତ୍ନରାଜି ଏହି ମାଟିତଳେ ପୋତି ରହିଛି । ଆମେ ବର୍ତ୍ତମାନ ସେଗୁଡ଼ିକୁ ଉଦ୍ଧାର କରିବା ଏବଂ ଏହି ମାଟିତକ ବୋହିନେଇ ଗ୍ରାମର ଦାଣ୍ଡ ଓ ଗୋହିରୀର ଖାଲକୁ ପୂର୍ଣ୍ଣ କରିଦେବା ।

Digitized by srujanika@gmail.com

ଏହା କହି ମଂତ୍ରୀ ଲାଇଟ୍‌ଟି ଧରି ହୁପ୍ ହୁପ୍ କରି ଡଳକୁ ଓହ୍ଲାଇ ପଡ଼ିଲେ । ଯୁବନେତାମାନେ ସାର୍ ସାର୍ କହି ପଛରେ ଗୋଡ଼ାଇଥାନ୍ତି । ମାତ୍ର ମଂତ୍ରୀ କହିଲେ ଖୁବ୍ ଦୃଢ଼ ସ୍ୱରରେ—ଆଜି ଆପଣମାନଙ୍କ ସାହାଯ୍ୟରେ ଏ ଦାଣ୍ଡ ଓ ଗୋହିରୀ ଖାଲକୁ ପୋତି ସମତୁଲ କରିବା—ତେବେ ଯାଇ ଭୁବନେଶ୍ୱର ଫେରିବା । ଆଉ ପଦେ ବି କଥା ମୁଁ କାହାଠୁଁ ଶୁଣିବିନି—ଯାଅ ଆଣ ଯେତେସବୁ କୋଡ଼, କୋଦାଳ ଆଉ ଟୋକେଇ ଅଛି ଗାଁରେ ।

ଆଉ ଚୂରିବା କ'ଣ ? ପନ୍ଦର ମିନଟ୍ ମଧ୍ୟରେ ପଚିଶଟି କୋଦାଳ, ପଚିଶଟି ଟୋକେଇ ଜମା ହୋଇଗଲା । ମଂତ୍ରୀ ନିଜେ କୋଦାଳ ଧରି ଘଣ୍ଟାଏ କାଳ ମାଟି ହାଣିଲେ । ପେଟ୍ରୋମାକ୍ସ ଆଲୁଅ—ଏଣେ ପୂନେଇଁରାତିର ଜହ୍ନ ଆଲୁଅ ଶହ ଶହ ଲୋକ କାମରେ ଲାଗିଗଲେ । ଦୁଇତିନି ଘଣ୍ଟା ଭିତରେ ଗୋହିରୀ ଓ ଦାଣ୍ଡର ଖାଲଗୁଡ଼ିକ ପୂର୍ଣ୍ଣ ହୋଇଗଲା ।



Digitized by srujanika@gmail.com